# ଆଲୋକିତ ପଥ

ଲେଖକ :

ଲୋକନାଥ ମହାପାତ୍ର
ଷ୍ଟୁଆର୍ଟ ରୋଡ୍, କଟକ-୭୫୩ ୦୦୨

ପ୍ରକାଶକ :

ବ୍ରହ୍ମବିଦ୍ୟା ସମିତି, କଟକ ଲଜ୍
କାଳିଗଳି, କଟକ-୭୫୩ ୦୦୨

ପ୍ରଥମ ସଂସ୍କରଣ :

୧୯୯୮

ମୁଦ୍ରଣ :

ନବଜୀବନ ପ୍ରେସ
ଚାନ୍ଦନୀଚୌକ, କଟକ-୨

ମୂଲ୍ୟ :

ଟ ୧୫-୦୦

# ଉତ୍ସର୍ଗ ପତ୍ର

ବ୍ରହ୍ମବିଦ୍ୟା ଯେଉଁମାନେ ଅଧ୍ୟୟନ କରନ୍ତି ଓ ସେଥିରୁ ପ୍ରାପ୍ତ ଶିକ୍ଷାରୁ କିଛି ନିଜ ଜୀବନରେ ପ୍ରତିଫଳିତ କରିବାକୁ ଚେଷ୍ଟା କରନ୍ତି, ବ୍ରହ୍ମବିଦ୍ୟା ପ୍ରଚାର କରିବାରେ ଯେଉଁମାନେ କାର୍ଯ୍ୟ କରନ୍ତି ଓ ବ୍ରହ୍ମବିଦ୍ୟା ସମିତି ପରିଚାଳନା କରିବାରେ ଯେଉଁମାନେ ବ୍ରତୀ, ସେମାନଙ୍କ ହସ୍ତରେ ଏହି ପୁସ୍ତକ ଦେଲି । ଅନଭିଜ୍ଞ ଲେଖକର ଦୋଷ ତ୍ରୁଟି କ୍ଷମା କରି ଏହାକୁ ଗ୍ରହଣ କରନ୍ତୁ ।

ଲେଖକ

# କୃତଜ୍ଞତା

ଡାକ୍ତର ଚିନ୍ମୟୀ ମହାପାତ୍ର ତାଙ୍କର ବହୁଳ କର୍ମମୟ ଜୀବନରେ ବ୍ୟସ୍ତ ଥାଇ ମଧ୍ୟ ଏହି ପୁସ୍ତକର ପାଣ୍ଡୁଲିପିରେ ଥିବା ଅନେକ ତ୍ରୁଟି ସଂଶୋଧନ କରି ଦେଇଥିବାରୁ ମୁଁ ତାହାଙ୍କଠାରେ କୃତଜ୍ଞ ।

ନବଜୀବନ ପ୍ରେସର ଅଧିକାରୀ ଶ୍ରୀ କୃଷ୍ଣମୋହନ ମିଶ୍ର ମୁଦ୍ରଣ ସହିତ ପ୍ରୁଫ୍ ସଂଶୋଧନର ଦାୟିତ୍ୱ ନେଇଥିବାରୁ ମୁଁ ତାହାଙ୍କଠାରେ କୃତଜ୍ଞ ।

ଲେଖକ

# ସୂଚୀପତ୍ର

# ପ୍ରଥମ ଭାଗ

## ପ୍ରଥମ ଅଧ୍ୟାୟ—ଭୂମିକା

ଏହି ପୁସ୍ତକ **Light on the Path** ଉପରେ ଆଧାରିତ । ବ୍ରହ୍ମବିଦ୍ୟାରେ **Light on the Path** ପୁସ୍ତକ ଆଧ୍ୟାତ୍ମିକ ଉପଦେଶାବଳୀ ପୁସ୍ତକମାନଙ୍କ ମଧ୍ୟରୁ ଏକ ବିଶିଷ୍ଟ ଗ୍ରନ୍ଥ । ବହୁ ପୁରାତନ **The Book of the Golden Precepts**ରୁ ଏହା ସଂଗୃହୀତ । ଏହା ଦୀକ୍ଷିତମାନଙ୍କ ପାଇଁ ଉଦ୍ଦିଷ୍ଟ । ଏହାର ଗୂଢ଼ତତ୍ତ୍ୱ ଗୁରୁମାନେ ସେମାନଙ୍କର ଦୀକ୍ଷିତ ଚେଲାମାନଙ୍କୁ ବୁଝାଇଥାନ୍ତି । କିନ୍ତୁ ଜନସାଧାରଣଙ୍କୁ, ବିଶେଷତଃ ବ୍ରହ୍ମବିଦ୍ୟାର ଛାତ୍ରମାନଙ୍କୁ, ଏହି ପୁସ୍ତକ ଦିଗ୍‌ଦର୍ଶନ ଦେବା ଉଦ୍ଦେଶ୍ୟରେ ପ୍ରକାଶିତ ହୋଇଥିଲା । ଯେଉଁମାନେ ଜ୍ଞାନ ପିପାସୁ, ଚିନ୍ତାଶୀଳ ଓ ଆଧ୍ୟାତ୍ମିକ ଉନ୍ନତିରେ ବ୍ରତୀ, ସେମାନେ ଏହି ପୁସ୍ତକରୁ ଲାଭବାନ୍ ହେବେ ।

ମୂଳ ପୁସ୍ତକରେ ପ୍ରାଚୀନ ସଂସ୍କୃତ ଭାଷାରେ ୧୫ଟି ଉକ୍ତି ଥିଲା । ପ୍ରତ୍ୟେକ ଉକ୍ତିରେ ମହାଚୌହାନ୍ ଏକ ସଂକ୍ଷିପ୍ତ ବ୍ୟାଖ୍ୟା ସଂଯୋଗ କରିଥିଲେ । ପ୍ରାଥମିକ ଉକ୍ତି ଓ ବ୍ୟାଖ୍ୟା ଏହି ପୁସ୍ତକରେ ଏକତ୍ର କରି ଏକକ ଉକ୍ତି ରୂପେ ଦିଆଯାଇଛି । ମହାତ୍ମା ଭେନେସିଆନ୍ ଓ ମହାତ୍ମା ହିଲାରିଅନ୍ ସେଥିରେ କେତେକ ସଂକ୍ଷିପ୍ତ ଟୀକା ସଂଯୋଗ କରିଥିଲେ । ମହାତ୍ମା ହିଲାରିଅନ୍ ପୁସ୍ତକଟିକୁ ମାବେଲ୍ କଲିନ୍‌ଙ୍କ ଜରିଆରେ ଲେଖିଛନ୍ତି । କଥାବସ୍ତୁ ମହାତ୍ମା ହିଲାରିଅନ୍‌ଙ୍କର ଓ କଲମ ଚାଳନା ମାବେଲ୍ କଲିନ୍‌ଙ୍କର ।

ବ୍ରହ୍ମବିଦ୍ୟାର ତିନୋଟି ଉପାଦେୟ ଉପଦେଶାତ୍ମକ ପୁସ୍ତକ ମଧ୍ୟରୁ **"At the Feet of the Master"** ଓ **"The Voice of Silence"**ର ଓଡ଼ିଆ ଅନୁବାଦ ହୋଇସାରିଛି । **Light on the Path**ର ଓଡ଼ିଆ ଅନୁବାଦ ହୋଇ ନ ଥିବାରୁ ଏହି ପୁସ୍ତକ ଲେଖିଲି । ଏହା ଠିକ୍ ଅନୁବାଦ ନୁହେଁ । ଏହି ପୁସ୍ତକରେ ଥିବା ଉକ୍ତିଗୁଡ଼ିକ ସମ୍ପର୍କରେ ଆନି ବେସାନ୍ତ ଓ ଲିଡ୍‌ବିଟର୍ କରିଥିବା ବ୍ୟାଖ୍ୟାର ସଂକ୍ଷିପ୍ତ ବିବରଣ ସନ୍ନିହିତ କରାଯାଇଛି । ଅନିବାର୍ଯ୍ୟ କାରଣରୁ ବ୍ୟାଖ୍ୟାରେ କେତେକ ପୁନରାବୃତ୍ତି ହୋଇଛି ।

## ଦ୍ୱିତୀୟ ଅଧ୍ୟାୟ—ପ୍ରାରମ୍ଭିକ କଥନ

### ୧ । ଦେଖିବା ପାଇଁ ଚକ୍ଷୁର ଲୋତକପାତ କରିବାର ଶକ୍ତି ଲୋପ ହେବା ଆବଶ୍ୟକ । (Before the eyes can see they must be incapable of tears.)

ଚାରୋଟି ପ୍ରାରମ୍ଭିକ କଥନ ମଧ୍ୟରୁ ଏହା ପ୍ରଥମ । ଏଥିରେ ବର୍ଣ୍ଣିତ ଗୁଣଗୁଡ଼ିକରେ ପାରଦର୍ଶିତା ଲାଭ ନ କଲେ ଶିଷ୍ୟ ଆଧ୍ୟାତ୍ମିକ ପଥରେ ପ୍ରବେଶ କରିପାରିବ ନାହିଁ । ଏଥିରେ ପ୍ରକୃତ ଦୃଷ୍ଟି, ପ୍ରକୃତ ଶ୍ରବଣ, ପ୍ରକୃତ ବଚନ ଓ ମହାତ୍ମା ବା ଗୁରୁଙ୍କ ସମ୍ମୁଖରେ ପ୍ରକୃତ ସ୍ଥିତି ବିଷୟରେ କୁହାଯାଇଛି । ଦୀକ୍ଷା ପାଇବା ପାଇଁ ପ୍ରସ୍ତୁତ ହେଉଥିବା ବ୍ୟକ୍ତି ଓ ଦୀକ୍ଷିତ ଉଭୟଙ୍କ ପାଇଁ ଏହି ଉପଦେଶାବଳୀ ପ୍ରଯୁଜ୍ୟ । ଗୁରୁଙ୍କ ତତ୍ତ୍ୱାବଧାନରେ ନିଃସ୍ୱାର୍ଥପର ମାନବ ସେବା ପାଇଁ ଏହି ଉପଦେଶାବଳୀ ଉଦ୍ଦିଷ୍ଟ ।

ସାଧାରଣ ଲୋକ ନିଜର ବା ଯେଉଁମାନଙ୍କୁ ସେ ନିଜର ବୋଲି ଭାବେ ସେମାନଙ୍କର ଦୁଃଖ ପାଇଁ ଲୋତକପାତ କରେ । ଅନ୍ୟମାନଙ୍କ ଦୁଃଖ କଷ୍ଟରେ ସେ ଉଦାସୀନ ରୁହେ । ନିଜକୁ ଓ ନିଜର ବୋଲି ଭାବୁଥିବା ଲୋକଙ୍କୁ ଅନ୍ୟମାନଙ୍କଠାରୁ ପୃଥକ୍ ବୋଲି ମନେ କରେ । ଆଧ୍ୟାତ୍ମିକ ପଥରେ ଯିବାକୁ ହେଲେ ଏହି ମନୋଭାବ ତ୍ୟାଗ କରିବାକୁ ହେବ । ମନୋଭାବ ଏପରି ଉନ୍ନତ ସ୍ତରକୁ ଆଣିବାକୁ ହେବ ଯେପରିକି ନିଜର କୌଣସି ପ୍ରକାର ସ୍ୱାର୍ଥହାନିରେ ଦୁଃଖ ନ ଥିବ । ନିଜ ପାଇଁ ଲୋତକପାତ କରିବାର ଶକ୍ତି ଲୋପ ହୋଇଥିବ । ଏହା କରି ପାରିଲେ ଅନ୍ୟମାନଙ୍କ ଦୁଃଖ କଷ୍ଟ ଅନୁଭବ କରି ହେବ ଓ ଅନ୍ୟମାନଙ୍କଠାରୁ ପୃଥକ ଭାବନା ଦୂର ହୋଇଯିବ । ଶରୀର ଧାରଣ କରିବାକୁ ଯାହା କର୍ତ୍ତବ୍ୟ ତାହା କରିବ । କିନ୍ତୁ ତାହା ବ୍ୟତୀତ ନିଜପାଇଁ କୌଣସି କାମନା ପୋଷଣ କରିବ ନାହିଁ । ଆଶା କରିବ ନାହିଁ, ନିରାଶ ହେବ ନାହିଁ, ଭୟ କରିବ ନାହିଁ ।

ନିଜ ପାଇଁ ଉଦାସୀନତା ଓ ପରପାଇଁ ସମବେଦନା ସାଧନ ଜୀବନର ପ୍ରାରମ୍ଭରେ କଷ୍ଟକର ହୁଏ । ସତତ ଚେଷ୍ଟା ଦ୍ୱାରା କ୍ରମଶଃ ଏହି ମନୋଭାବ ଦୃଢ଼ ହୁଏ । ସାଧକର ଚେଷ୍ଟା ଯେତିକି ଫଳବତୀ ହେଉଥାଏ, ତାହାର କାମ-ମାନସ ଶରୀର ସେତିକି ନିର୍ମଳ ଓ ଶୁଦ୍ଧ ହେଉଥାଏ । ସାଧାରଣ ଲୋକ ଅନ୍ୟର ଦୁଃଖ କଷ୍ଟ ଦେଖିଲେ ଉଦାସୀନ ନ ହୋଇ ବ୍ୟଥିତ ହୋଇପାରେ । କିନ୍ତୁ ସାଧକ ସମଗ୍ର ମାନବ ଜାତିର ଦୁଃଖ କଷ୍ଟ ନ ଦେଖି ମଧ୍ୟ ତାହା ଅନୁଭବ କରି ବ୍ୟଥିତ ହୁଏ । ତେଣୁ ସାଧକର ଚିନ୍ତା ଓ କାର୍ଯ୍ୟ ସମଗ୍ର ମାନବ ଜାତିର ଦୁଃଖ କଷ୍ଟ ଉପସମ କରିବାକୁ ଉଦ୍ଦିଷ୍ଟ ।

ଅସହାୟ ମାନବଜାତିକୁ ସାହାଯ୍ୟ କରିବାରେ ବ୍ରତୀ ସାଧକର ନିଜପାଇଁ ଚିନ୍ତା ନ ଥାଏ । ନିଜପ୍ରତି ଉଦାସୀନ ଥିବାରୁ ତାହାର ନିଜର ଦୁଃଖ କଷ୍ଟ ପାଇଁ ଆଖିରେ ଲୁହ ନ ଥାଏ । ମାନବ ଜାତିରେ ସେ କେତେ କ୍ଷୁଦ୍ର ଓ ତାହାର କଷ୍ଟ କେତେ ନଗଣ୍ୟ ସେ ବୁଝିଥାଏ । ତେଣୁ ନିଜର ସ୍ୱାର୍ଥ ତ୍ୟାଗ କରି ସେ ମାନବଜାତିର କଲ୍ୟାଣ ପାଇଁ କାର୍ଯ୍ୟ କରେ ।

ସାଧକ ଦୀକ୍ଷା ଲାଭ କରିବା ପରେ ତାହାର ଆତ୍ମା-ବୁଦ୍ଧିର ବିକାଶ ହୁଏ ଓ ସେ ଆଧ୍ୟାତ୍ମିକ ପ୍ରଗତି ବିଷୟରେ ଜ୍ଞାନ ଲାଭ କରେ । ସେ ଲୋତକପାତ ଶକ୍ତି ବିଲୁପ୍ତ ହେବାର ତାତ୍ପର୍ଯ୍ୟ ବୁଝେ । ସେ ଉପଲବ୍ଧି କରେ ଯେ ଆତ୍ମାର ବିକାଶ ପାଇଁ ମନୁଷ୍ୟର ଯେଉଁ ଶିକ୍ଷା ଆବଶ୍ୟକ ତାହା କର୍ମଫଳ ଭୋଗଦ୍ୱାରା ପ୍ରାପ୍ତ ହୁଏ । ମନୁଷ୍ୟ ଯାହା ଦୁଃଖ କଷ୍ଟ ପାଏ ତାହା ତାହାର ନିଜର କର୍ମଫଳ । ଏହି କର୍ମଫଳ ଭୋଗ କରି ଯେଉଁ ଶିକ୍ଷାଲାଭ ହୁଏ ସେଥିରେ ଆତ୍ମା ବିକଶିତ ହୁଏ । ତେଣୁ ଏହା ମଙ୍ଗଳପ୍ରଦ । ସେଥିପାଇଁ ଦୀକ୍ଷାପ୍ରାପ୍ତ ବ୍ୟକ୍ତି ଅନ୍ୟର ଦୁଃଖ କଷ୍ଟ ଅନୁଭବ କରେ ଓ ସହାନୁଭୂତି ପ୍ରକାଶ କରେ । କିନ୍ତୁ ଶୋଚନା କରେ ନାହିଁ । କାରଣ ସେ ଜାଣେ ଯେ ଏହି ଦୁଃଖ କଷ୍ଟ ଆତ୍ମାପାଇଁ ମଙ୍ଗଳପ୍ରଦ । ଯେଉଁ ଦୀକ୍ଷିତ ବ୍ୟକ୍ତି ଏପରି ଆତ୍ମା-ବୁଦ୍ଧିର ଆଲୋକ ପ୍ରାପ୍ତ ହୋଇଛି ସେ ସଂସାର ଜୀବନ ସ୍ରୋତରେ ଏକ ହୋଇଯାଇଛି । ତାହା ପକ୍ଷରେ ସେ ଓ ଅନ୍ୟମାନଙ୍କ ମଧ୍ୟରେ ବ୍ୟବଧାନ ନାହିଁ ।

ଏପରି ଉନ୍ନତ ଦୀକ୍ଷାପ୍ରାପ୍ତ ବ୍ୟକ୍ତି ଯେତେବେଳେ କାହାର ଦୁଃଖ କଷ୍ଟ ଲାଘବ କରିବାରେ ସାହାଯ୍ୟ କରେ ସେ ସେହି ଦୁଃଖ କଷ୍ଟକୁ ନିଜର

ବୋଲି ଅନୁଭବ କରେ । ବାହ୍ୟ ସାହାଯ୍ୟ ପରିବର୍ତ୍ତେ ସେ ଅନ୍ତର୍ମୁଖୀ ସାହାଯ୍ୟ ଦାନ କରେ । ବାହ୍ୟ ସାହାଯ୍ୟ ଦ୍ୱାରା ଦୁଃଖ କଷ୍ଟର ସାମୟିକ ଉପଶମ ହୋଇପାରେ, କିନ୍ତୁ ଅନ୍ତର୍ମୁଖୀ ସାହାଯ୍ୟ ଦ୍ୱାରା ଶକ୍ତି ମିଳେ, ଯାହା ଦ୍ୱାରା ଦୁଃଖ କଷ୍ଟ ସହିବା ଶକ୍ତିର ଚିରନ୍ତନ ବୃଦ୍ଧି ହୁଏ ।

**୨ । ଶୁଣିବା ପାଇଁ କର୍ଣ୍ଣର ସଂବେଦନଶୀଳତା ଲୋପ ହେବା ଅବଶ୍ୟକ । (Before the ear can hear it must have lost its sensitiveness.)**

ସାଧକକୁ ପ୍ରଶଂସା ଓ ନିନ୍ଦା ଉଭୟ ଶୁଣିବାକୁ ହେବ । ନିଜର ପ୍ରଶଂସା ଓ ନିନ୍ଦା ଉଭୟ ପ୍ରତି ସାଧକ ଉଦାସୀନ ହେବା ଆବଶ୍ୟକ । ନିଜର ପ୍ରଶଂସାରେ ଉଲ୍ଲସିତ ହେବ ନାହିଁ ଓ ନିନ୍ଦାରେ ବିଚଳିତ ବା ଦୁଃଖିତ ହେବ ନାହିଁ । କିନ୍ତୁ ଅନ୍ୟମାନେ ଯେଉଁ ମତବ୍ୟକ୍ତ କରନ୍ତି ତାହା ପ୍ରତି ଧ୍ୟାନ ଦେବ ଓ ବିଚାର କରିବ । ଅନ୍ୟମାନଙ୍କ ମତକୁ ଉପେକ୍ଷା କଲେ ସାଧକ ଅନ୍ୟମାନଙ୍କୁ ନିଜଠାରୁ ପୃଥକ୍ ବିବେଚନା କରିବ ଓ ତାହାକୁ ସାହାଯ୍ୟ କରି ପାରିବ ନାହିଁ । କ୍ରମଶଃ ସାଧକର କେତେକ ଅଲୌକିକ ଶକ୍ତି ହୁଏ । ସେ ଅନ୍ୟମାନଙ୍କ ଭାବନା ଜାଣିପାରେ । ଏହି ଶକ୍ତି ପାଇବା ପୂର୍ବରୁ ସେ ନିଜର ପ୍ରଶଂସା ଓ ନିନ୍ଦା ପ୍ରତି ଉଦାସୀନ ହୋଇଥିବା ଆବଶ୍ୟକ ।

ନିନ୍ଦା ଶୁଣିଲେ ସାଧକର ମନ୍ଦ କର୍ମ ହୁଏ ନାହିଁ; ନିନ୍ଦା କରିବା ଲୋକର ମନ୍ଦ କର୍ମ ହୁଏ । ତେଣୁ ନିନ୍ଦା ଶୁଣି ସାଧକ ନିଜ ପାଇଁ ଦୁଃଖିତ ହୁଏ ନାହିଁ; ନିନ୍ଦା କରୁଥିବା ଲୋକ ମନ୍ଦ କର୍ମ ଅର୍ଜନ କରୁଥିବାରୁ ତାହା ପାଇଁ ଦୁଃଖିତ ହୁଏ ଓ ନୀରବ ରୁହେ ।

**୩ । ମହାତ୍ମାଙ୍କ ଉପସ୍ଥିତିରେ କହିବା ପୂର୍ବରୁ କଥନରେ ବ୍ୟଥା ଦେବାର ଶକ୍ତି ଲୋପ ହେବା ଆବଶ୍ୟକ । (Before the voice can speak in presence of the Masters it must have lost the power to wound.)**

ସାଧକ ନିଜ ଅନ୍ତରରୁ ସବୁ ଦୂର କରିଦେବା ଆବଶ୍ୟକ ଯାହାକି ଅନ୍ୟକୁ କଷ୍ଟ ଦେବ । ବାକ୍ୟ ସଂଯମ ଶିକ୍ଷା କରିବାକୁ ହେବ । ରୁଡ଼,

ଅଶୋଭନୀୟ ବା ଅନ୍ୟ କୌଣସି ପ୍ରକାରେ କଷ୍ଟ ଦେବା ପରି ବାକ୍ୟରୁ ନିବୃତ୍ତ ହେବା ଆବଶ୍ୟକ । ପରନିନ୍ଦା, ପରଚର୍ଚ୍ଚା ଏକ ସାଧାରଣ ରୋଗ । ସାଧକ ଏସବୁରୁ ବହୁ ଊର୍ଦ୍ଧ୍ୱରେ ରହିବା ଦରକାର । ଯଦି କର୍ତ୍ତବ୍ୟ ଦୃଷ୍ଟିରୁ କାହାର ଦୋଷ ତ୍ରୁଟି ସୂଚାଇ ଦେବାକୁ ହୁଏ, ସାଧକ ସହାନୁଭୂତିସହ ବନ୍ଧୁ ଭାବରେ ତାହା କରିପାରେ । ଯଦି ଦୋଷ ତ୍ରୁଟି ସୂଚାଇ ଦେବାରେ ଅନ୍ୟର କୌଣସି କଷ୍ଟ ହେଲା, ସାଧକ ଆତ୍ମନିରୀକ୍ଷଣ କରି ନିଜ କହିବାରେ କେଉଁ ତ୍ରୁଟି ରହିଲା ତାହା ଜାଣିବା ଆବଶ୍ୟକ । ଅହଂକାର ବିଲୁପ୍ତ ନ ହେଲେ ବାକ୍ୟ ସଂଯତ ହୁଏ ନାହିଁ । ଯାହା କହିବା ଆବଶ୍ୟକ ତାହାକୁ ସର୍ବଦା ବିଚାର ସହିତ ଶାନ୍ତ ଭାବେ ସହାନୁଭୂତି ସହ କହିବା ଉଚିତ । କହିବା ସର୍ବଦା ସତ୍ୟ, ଦୟାସମ୍ପନ୍ନ ଓ ସାହାଯ୍ୟକାରୀ ହେବା ଉଚିତ ବୋଲି At the Feet of the Master ପୁସ୍ତକରେ ଉପଦେଶ ଦିଆଯାଇଛି ।

**୪ । ମହାତ୍ମାଙ୍କ ସମ୍ମୁଖରେ ଉପସ୍ଥିତ ହେବା ପୂର୍ବରୁ ସାଧକ ନିଜ ହୃଦୟର ରକ୍ତରେ ନିଜ ପାଦ ଧୋଇଥିବା ଆବଶ୍ୟକ । (Before the soul can stand in presence of the Masters its feet must be washed in the blood of the heart.)**

ଏହି ଉକ୍ତି ପୂର୍ଣ୍ଣ ସମର୍ପଣ ଓ ଉତ୍ସର୍ଗ ବୁଝାଏ । ସାଧକ ଶିଷ୍ୟ ହେବାକୁ ସମସ୍ତ ପାର୍ଥିବ ଆଶା, ଆକାଂକ୍ଷା, ବନ୍ଧନ, ଏପରିକି ଜୀବନ ମଧ୍ୟ ତ୍ୟାଗ କରିବାକୁ ପ୍ରସ୍ତୁତ ଥିବା ଆବଶ୍ୟକ । ବହୁକାଳ ପୂର୍ବେ ମହାତ୍ମା ମୌର୍ଯ୍ୟ ଜଣେ ରାଜା ଥିଲେ । H. P. Blavatsky ତାଙ୍କର ଏକମାତ୍ର ପୁତ୍ର ଥିଲେ । Colonel Olcott ତାଙ୍କର ପ୍ରହରୀମାନଙ୍କର ଅଧ୍ୟକ୍ଷ ଥିଲେ । ଥରେ ରାଜପୁତ୍ର ଏକା ପ୍ରହରୀ-ଅଧ୍ୟକ୍ଷଙ୍କ ସହିତ ଥିବାବେଳେ କେତେକ ଷଡ଼ଯନ୍ତ୍ରକାରୀ ରାଜପୁତ୍ରଙ୍କୁ ହତ୍ୟା କରିବାକୁ ଚେଷ୍ଟା କଲେ । କିନ୍ତୁ ପ୍ରହରୀ-ଅଧ୍ୟକ୍ଷ ରାଜପୁତ୍ରଙ୍କୁ ପଛରେ ରଖି ଷଡ଼ଯନ୍ତ୍ରକାରୀଙ୍କୁ ପ୍ରତିରୋଧ କଲେ । ରାଜପୁତ୍ର ରକ୍ଷା ପାଇଗଲେ । କିନ୍ତୁ ପ୍ରହରୀ-ଅଧ୍ୟକ୍ଷ ମାରାତ୍ମକ କ୍ଷତ ବହନ କରି ତଳେ ପଡ଼ି ରହିଲେ । ରାଜା ଆସିବାରୁ ପ୍ରହରୀ-ଅଧ୍ୟକ୍ଷ ନିଜ ଆଙ୍ଗୁଠିର କ୍ଷତରୁ ଝରୁଥିବା ରକ୍ତରୁ ଟୋପାଏ ନେଇ ରାଜାଙ୍କ ପାଦରେ

ଦେଲେ । ରାଜା ଦେଖିଲେ ଯେ ପ୍ରହରୀ-ଅଧ୍ୟକ୍ଷର ମୃତ୍ୟୁ ଆସନ୍ନ । ସେ ପଚାରିଲେ, "ତୁମେ ମୋ'ର ଓ ମୋ'ର ପୁତ୍ରର ଜୀବନ ରକ୍ଷା କରିବାକୁ ନିଜର ପ୍ରାଣ ଦାନ କଲ । ମୁଁ ତୁମ ପାଇଁ କଅଣ କରିବି ?" ପ୍ରହରୀ-ଅଧ୍ୟକ୍ଷ ଉତ୍ତର ଦେଲେ, "ଏହି ଆଶୀର୍ବାଦ କରନ୍ତୁ ଯେ ମୁଁ ଓ ଆପଣଙ୍କ ପୁତ୍ର ଜନ୍ମ ଜନ୍ମାନ୍ତରେ ଆପଣଙ୍କ ସେବକ ରହିବୁ ।" ରାଜା କହିଲେ, "ମୁଁ ଓ ମୋ'ର ପୁତ୍ର ପାଇଁ ନିଜର ରକ୍ତପାତ କରିଥିବା ହେତୁ ମୁଁ ଓ ତୁମ ମଧ୍ୟରେ ରକ୍ତ-ବନ୍ଧନ ଚିରକାଳ ରହିବ ।" କାଳକ୍ରମେ ରାଜା ମହାତ୍ମା ମୌର୍ଯ୍ୟ ହେଲେ, ରାଜପୁତ୍ର **H. P. Blavatsky** ହେଲେ ଓ ପ୍ରହରୀ-ଅଧ୍ୟକ୍ଷ **Colonel Olcott** ହେଲେ । ଉଭୟ ମହାତ୍ମା ମୌର୍ଯ୍ୟଙ୍କର ଶିଷ୍ୟ ହେଲେ ।

ପାର୍ଥିବ ସଂସାରରେ ସାଧକ ଯାହାକୁ ପ୍ରାଣତୁଲ୍ୟ ଭଲପାଏ, ସେସବୁ ତ୍ୟାଗ କରିବା ଦରକାର । ଆବଶ୍ୟକ ହେଲେ ପ୍ରାଣ ମଧ୍ୟ ଦାନ କରିବାକୁ ପଡ଼େ । ଚେଲା ହେବା ପୂର୍ବରୁ ସାଧକକୁ ଏପରି ପରୀକ୍ଷାର ସମ୍ମୁଖୀନ ହେବାକୁ ପଡ଼େ । ସବୁ ତ୍ୟାଗ କରି ନିଃସ୍ୱ ଅବସ୍ଥାରେ ରହିବାର ମନୋବଳର ପରୀକ୍ଷା ହୁଏ । ଏହି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ସାଧକକୁ ଚେଲା ଭାବେ ଗ୍ରହଣ କରାଯାଏ ।

ସାଧକ ସମସ୍ତ ନିମ୍ନ ପ୍ରବୃତ୍ତିକୁ ବଳି ଦେବା ଆବଶ୍ୟକ । କିନ୍ତୁ ସହସା ତାହା କରିବା ସମ୍ଭବ ନୁହେଁ । ଏହା କ୍ରମଶଃ କରିବାକୁ ହୁଏ । ଏହା କରିବାର ସୁଯୋଗ ପ୍ରକୃତିର ନିୟମ ଅନୁସାରେ ସମସ୍ତଙ୍କୁ ମିଳେ । ସାଧାରଣ ଲୋକ ଅଜ୍ଞତା ବଶତଃ ଏହି ସୁଯୋଗକୁ ଦୃଷ୍ଟି ଦିଏ ନାହିଁ । ସାଧକ ସମସ୍ତ ସୁଯୋଗ ଗ୍ରହଣ କରି ନିମ୍ନ ପ୍ରବୃତ୍ତିକୁ ତ୍ୟାଗ କରେ ଓ ଚରମ ତ୍ୟାଗ ପାଇଁ ପ୍ରସ୍ତୁତ ରୁହେ । ସବୁ ତ୍ୟାଗ କରିବାରେ ଆନନ୍ଦ ଥିବା ଦରକାର । ନଚେତ୍ ତ୍ୟାଗ ବିଡ଼ମ୍ବନା କିମ୍ବା ଅସମ୍ଭବ ।

## ତୃତୀୟ ଅଧ୍ୟାୟ—୧ମ ଉକ୍ତି

**୧ । ଉଚ୍ଚ ଅଭିଳାଷ ବର୍ଜନ କର, କିନ୍ତୁ ଉଚ୍ଚ ଅଭିଳାଷୀ ବ୍ୟକ୍ତିଙ୍କ ପରି କାର୍ଯ୍ୟ କର ।**

ସାଧାରଣ ଲୋକର ପାର୍ଥିବ କାମନା ଥାଏ । ଧନବାନ୍ ହେବା, ସୁଖ ସମ୍ଭୋଗ ପ୍ରାପ୍ତ ହେବା, ସୁନାମ ଅର୍ଜନ କରିବା ଇତ୍ୟାଦି ପାର୍ଥିବ କାମନାର ଅନ୍ତର୍ଗତ । ବୁଦ୍ଧିମାନ ଲୋକ ଏସବୁ ପ୍ରାପ୍ତ ହୋଇ ଅନେକ ଲୋକଙ୍କୁ ନିଜର ଅନୁଗତ କରିପାରନ୍ତି । ରାଜନୀତିରେ ଉଚ୍ଚ ସ୍ଥାନକୁ ଯାଇଥିବା ଲୋକ ସାଧାରଣତଃ ଏହି ଶ୍ରେଣୀର । ସାଧକର ଉଚ୍ଚ ଅଭିଳାଷ ଥାଏ । କିନ୍ତୁ ତାହାକୁ ବର୍ଜନ କରିବାକୁ ପଡ଼େ ।

ପାର୍ଥିବ କାମନା ଓ ଆଧ୍ୟାତ୍ମିକ ଅଭିଳାଷର ଆବଶ୍ୟକତା ଅଛି । ଏହା ପାର୍ଥିବ ଓ ଆଧ୍ୟାତ୍ମିକ ଉନ୍ନତି ପାଇଁ କାର୍ଯ୍ୟ କରିବାକୁ ପ୍ରେରଣା ଦେଇଥାଏ । ପାର୍ଥିବ କାମନାର ଫଳ ବାରମ୍ବାର ଦୁଃଖ କଷ୍ଟରେ ପରିଣତ ହେଲେ ତାହାକୁ ତ୍ୟାଗ କରି ମନୁଷ୍ୟ ଆଧ୍ୟାତ୍ମିକ ଅଭିଳାଷକୁ ଆଶ୍ରା କରେ । ଆଧ୍ୟାତ୍ମିକ ଅଭିଳାଷ ବାରମ୍ବାର ନିରାଶାରେ ପରିଣତ ହେଲେ ମନୁଷ୍ୟର ଶିକ୍ଷା ହୁଏ ଯେ ସବୁ ପ୍ରକାର କାମନା ଓ ଅଭିଳାଷ ବନ୍ଧନର କଷ୍ଟ ସୃଷ୍ଟି କରେ ଓ କୌଣସି ବନ୍ଧନ ପ୍ରଗତିର ଅନୁକୂଳ ନୁହେଁ । ସାଧକ ପାର୍ଥିବ କାମନା ତ୍ୟାଗ କରିସାରିଥାଏ । ଏହି ଉକ୍ତିରେ ତାହାକୁ ଆଧ୍ୟାତ୍ମିକ ଅଭିଳାଷ ତ୍ୟାଗ କରିବାକୁ କୁହାଯାଇଛି । ସବୁ ଅଭିଳାଷ ପୂର୍ଣ୍ଣ ହୁଏ, କିନ୍ତୁ ସ୍ଥାନ, କାଳ, ପାତ୍ର ଓ ପ୍ରକାର ଭେଦରେ ପ୍ରକୃତିର ନିୟମ ଅନୁସାରେ ହୁଏ । ତେଣୁ ସାଧକ ନିରାଶ ହୁଏ । ଅଭିଳାଷ ବର୍ଜନ କଲେ ନିରାଶ ହେବାକୁ ହେବ ନାହିଁ ।

ଅଭିଳାଷ ତ୍ୟାଗ କଲେ ପ୍ରେରଣାର ସମାପ୍ତି ହେଲା ବୋଲି ଆଶଙ୍କା କରିବା ଠିକ୍ ନୁହେଁ । ସମର୍ପଣ ମନୋଭାବରେ କାର୍ଯ୍ୟ କରିବା ଉଚିତ୍ । ଋଣ ଦେବା ଓ ଦାନ କରିବାରେ ପ୍ରଭେଦ ଅଛି । ଋଣ ଦେବାରେ ପ୍ରତ୍ୟାଶା ଅଛି । ଦାନ କରିବାରେ ପ୍ରତ୍ୟାଶା ନାହିଁ । ସ୍ଥାନ,

କାଳ, ପାତ୍ର ଓ ପ୍ରକାର ଭେଦରେ, ପ୍ରକୃତିର ନିୟମ ଅନୁସାରେ, ବାମୀ ଉପକୃତ ହେବ, କିନ୍ତୁ ବାମୀ ସେ ବିଷୟରେ କୌଣସି ଅଭିଳାଷ ପୋଷଣ ନ କଲେ ବନ୍ଧନ କଷ୍ଟରୁ ମୁକ୍ତ ରହିବ । ତେଣୁ ସାଧକଙ୍କୁ ଉପଦେଶ ଦିଆଯାଇଛି ଯେ ସେ ଅଭିଳାଷ ବର୍ଜନ କରିବ, କିନ୍ତୁ ଉଚ୍ଚାଭିଳାଷୀ ବ୍ୟକ୍ତି ଯେପରି ଯତ୍ନ ଓ ନିପୁଣତାର ସହିତ କାର୍ଯ୍ୟ କରେ, ସେହିପରି ଯତ୍ନ ଓ ନିପୁଣତାର ସହିତ କାର୍ଯ୍ୟ କରିବ । ଏହି ଉକ୍ତି ଗୀତାର ନିଷ୍କାମ କର୍ମର ଅନୁରୂପ ।

ଇଚ୍ଛାଶକ୍ତି ପ୍ରୟୋଗ ଦ୍ୱାରା ଉଭୟ ପାର୍ଥିବ କାମନା ଓ ଆଧ୍ୟାତ୍ମିକ ଅଭିଳାଷ ବିନଷ୍ଟ କରାଯାଏ ଓ ଏହି ଇଚ୍ଛାଶକ୍ତି ନିଷ୍କାମ କର୍ମପାଇଁ ପ୍ରେରଣା ଦିଏ । ପ୍ରଗତି ହଠାତ୍ ହୁଏ ନାହିଁ । ଜନ୍ମ ଜନ୍ମାନ୍ତର ଚେଷ୍ଟାରେ ଏହା କ୍ରମଶଃ ହୁଏ ।

ମହାତ୍ମା ହିଲାରିଅନ୍ ଏ ସମ୍ପର୍କରେ କହିଛନ୍ତି—

**ଅଭିଳାଷ ପ୍ରଥମ ଅଭିଶାପ । ଏଥିରେ ସୁଫଳ ପ୍ରାପ୍ତିର ଆଶା ଥାଏ । ତେଣୁ ଅଭିଳାଷ ଏକ ପ୍ରଲୋଭନ । ବୁଦ୍ଧିମାନ୍ ଓ କ୍ଷମତାଶୀଳ ଲୋକମାନେ ଏଥିରେ ପ୍ରଲୁବ୍ଧ ହୋଇ ଆଧ୍ୟାତ୍ମିକ ପ୍ରଗତିରୁ ବଞ୍ଚିତ ହୁଅନ୍ତି । ତଥାପି କାମନା ଓ ଅଭିଳାଷର ଆବଶ୍ୟକତା ଅଛି । କାରଣ ଏହାର ଫଳ ତିକ୍ତ ହୁଏ ଓ ମନୁଷ୍ୟକୁ ଶିକ୍ଷା ଦିଏ ଯେ ସ୍ୱାର୍ଥପାଇଁ କାର୍ଯ୍ୟ ଶେଷରେ ନିରାଶାରେ ପରିଣତ ହୁଏ ।**

କାମନା ଫଳବତୀ ହେଲେ ତାହାର ତୃପ୍ତି କ୍ଷଣସ୍ଥାୟୀ ହୁଏ ଓ ତାହା ନୂତନ କାମନା ସୃଷ୍ଟି କରେ । କାମନାର ତୃପ୍ତି ନିମ୍ନଗାମୀ । ପ୍ରତ୍ୟେକ କାମନା ତୃପ୍ତି ପରେ ଦୁଃଖ, କଷ୍ଟ, ଅଶାନ୍ତି ହୁଏ । ଜ୍ଞାନବାନ୍ ଲୋକ ଏଥିରୁ ଶିକ୍ଷା ଲାଭ କରେ । ଅଜ୍ଞ ଲୋକ ଜ୍ଞାନବାନ ହେବା ପର୍ଯ୍ୟନ୍ତ କାମନାର ତୃପ୍ତିରେ ନିଜର ସମୟ ଓ ଶକ୍ତି ପ୍ରୟୋଗ କରେ । ଉଚ୍ଚସ୍ତରର କାମନାକୁ ଅଭିଳାଷ କୁହାଯାଇଛି । ଅଭିଳାଷର ତୃପ୍ତି ଶେଷରେ ନିରାଶାରେ ପରିଣତ ହୁଏ । ଆଧ୍ୟାତ୍ମିକ ଜ୍ଞାନ ଲାଭ କରିଥିବା ଲୋକ ଏଥିରୁ ଶିକ୍ଷା ପାଏ । ତେଣୁ କାମନା ଓ ଅଭିଳାଷ କୁଫଳଦାୟକ ହେଲେ ମଧ୍ୟ ପ୍ରଗତି ଦୃଷ୍ଟିରୁ ଏହାର ପ୍ରାରମ୍ଭିକ ଆବଶ୍ୟକତା ଅଛି ।

ମହାତ୍ମା ହ୍ୱିଲରଅନ୍ ଆହୁରି କହିଛନ୍ତି—

**ଏହି ପ୍ରଥମ ଉକ୍ତିକୁ ସରଳ ବା ସହଜ ମନେ କର ନାହିଁ । ସାଧାରଣ ମନୁଷ୍ୟର ସମସ୍ତ ଦୋଷତ୍ରୁଟି ତ୍ୟାଗ କରିଛି ବୋଲି ଅନୁଭବ କରୁଥିବା ସାଧକ ସେସବୁ ଦୋଷ ତ୍ରୁଟିକୁ ଉଚ୍ଚ ସ୍ତରରେ ଅନ୍ୟ ଭାବରେ ପ୍ରକଟିତ ହେବାର ଦେଖେ । ଅଭିଳାଷୀ ହେବନାହିଁ କହିବା ସହଜ । କଳାର ପ୍ରକୃତ ସାଧକ କଳା ସୃଷ୍ଟି କରିବାର ଆନନ୍ଦ ପାଇଁ କାର୍ଯ୍ୟ କରେ । ଏହାହିଁ ହେଉଛି ଉତ୍କୃଷ୍ଟ ମନୋଭାବ । ସବୁ ସ୍ତରରେ ସବୁ ପ୍ରକାର ଅଭିଳାଷ ତ୍ୟାଗ କରି କେବଳ ସତ୍-କାର୍ଯ୍ୟ କରିବାର ଆନନ୍ଦ ପାଇଁ କାର୍ଯ୍ୟ କରିବା ଉଚିତ୍ । ଦିଆଯାଇ-ଥିବା ଉକ୍ତିଗୁଡ଼ିକ ଉପରେ ଗଭୀର ଚିନ୍ତା କର । ଆତ୍ମ ନିରୀକ୍ଷଣ କର । ସ୍ୱାର୍ଥ ତ୍ୟାଗ ସହଜ ନୁହେଁ । ସ୍ୱାର୍ଥ ତ୍ୟାଗ କରିଛି ବୋଲି ନିଜକୁ ପ୍ରତାରିତ କର ନାହିଁ । ସାଧକ ଅବସ୍ଥାରେ ଦୋଷ ତ୍ରୁଟି ସୁଧାରି ହେବ । ତାହାକୁ ସୁଧାରି ନ ପାରିଲେ ତାହା କ୍ରମଶଃ ଦୃଢ଼ୀଭୂତ ହୋଇ ସାଧକକୁ ବିପଥଗାମୀ କରିବ ।**

ମନୁଷ୍ୟର ନିମ୍ନ ମାନସ ତାହାର ପ୍ରଭାବ ଛାଡ଼ିବାକୁ ଚାହେଁ ନାହିଁ । ନିମ୍ନ ମାନସ ସମସ୍ତ କାମନା ଓ ଅଭିଳାଷକୁ ନିୟନ୍ତ୍ରିତ କରେ । ତେଣୁ ଅତ୍ୟନ୍ତ ଚତୁରତାର ସହିତ ସେ ସାଧକକୁ ଭୁଲାଇ ରଖିବାକୁ ଚେଷ୍ଟା କରେ । ଯେଉଁ କାର୍ଯ୍ୟ କରିବା ଉଚିତ ନୁହେଁ ସେ କାର୍ଯ୍ୟ କରିବାକୁ ନିମ୍ନ ମାନସ ଚତୁର କାରଣ ଯୋଗାଇଦିଏ ।

ଅଭିଳାଷ ଲୋପ ପାଇଗଲା ପରି ଜଣାଗଲେ ମଧ୍ୟ ମନୁଷ୍ୟର ଅନ୍ତରରେ ତାହାର ବୀଜ ଲୋପ ପାଇବାକୁ ଅନେକ ସମୟ ଓ ସାଧନା ଆବଶ୍ୟକ ହୁଏ । ଏହି ବୀଜ ଲୋପ ନ ପାଇଲେ କାଳକ୍ରମେ ତାହା ପୁଣି ଅଙ୍କୁରିତ ହେବ ଓ ସାଧକର ସମସ୍ତ ସାଧନା ବ୍ୟର୍ଥ କରିଦେବ । ଆଧ୍ୟାତ୍ମିକ କ୍ଷେତ୍ରରେ ଅଭିଳାଷ ଯଦି କାରଣ ଶରୀରରେ ପ୍ରବେଶ କରେ, ତାହା-ହେଲେ ଜନ୍ମ ଜନ୍ମାନ୍ତରରେ ତାହା ପ୍ରକଟିତ ହେବ । କାରଣ ଶରୀରର ମୃତ୍ୟୁ ହୁଏ ନାହିଁ । ଏପରି ହେଲେ ସାଧକର ପତନ ଅବଶ୍ୟମ୍ଭାବୀ । ତେଣୁ ଅଭିଳାଷର ବୀଜ ଉତ୍ପାଟନ କରିବା ଆବଶ୍ୟକ ।

କାମନା ଓ ଅଭିଳାଷ ସଂପୂର୍ଣ୍ଣରୂପେ ତ୍ୟାଗ କରିବା ପରେ ସାଧକ ଏକ ଶୂନ୍ୟ ଅବସ୍ଥାକୁ ଆସେ; କିନ୍ତୁ ଏହା କ୍ଷଣସ୍ଥାୟୀ । ସାଧକର ଆଧ୍ୟାତ୍ମିକ ଚେତନା ଜାତ ହୁଏ ଓ ମାନସିକ ବିକାଶ ଦ୍ରୁତ ହୁଏ । ଇଚ୍ଛାଶକ୍ତି ବୃଦ୍ଧି ପାଏ । କାମନା ଓ ଅଭିଳାଷ ପରିବର୍ତ୍ତେ ଇଚ୍ଛାଶକ୍ତି ପ୍ରେରଣା ଦିଏ, ଯାହାଦ୍ୱାରା ସେ ଜନକଲ୍ୟାଣ କାର୍ଯ୍ୟରେ ନିଜକୁ ନିୟୋଜିତ କରେ । ଦେବାରେ ଆନନ୍ଦ ପାଏ । ପାଇବାକୁ ଚାହେଁ ନାହିଁ । ନିଜ ପାଇଁ କିଛି ନ ଚାହିଁବାରୁ ଓ ପାଇବାର ଇଚ୍ଛା ନ ଥିବାରୁ ସାଧକ ସର୍ବଦା ସନ୍ତୋଷ ଲାଭ କରେ । ଆଧ୍ୟାତ୍ମିକ ଶକ୍ତିର ଅଭିକର୍ତ୍ତା ରୂପେ ସମସ୍ତ କର୍ତ୍ତବ୍ୟ ନିଷ୍ଠା ସହକାରେ କରେ । ସେ ନିଜକୁ ଅନ୍ୟମାନଙ୍କ ସହିତ ଏକ ବୋଲି ବିଚାର କରେ । ସେ ବୁଝିଥାଏ ଯେ ସମସ୍ତ ଆତ୍ମା ଅଭିନ୍ନ, କେବଳ ଆଧ୍ୟାତ୍ମିକ ସ୍ତରରେ ତାରତମ୍ୟ ଥାଏ ।

## ଚତୁର୍ଥ ଅଧ୍ୟାୟ—୨ୟ ରୁ ୪ର୍ଥ ଉକ୍ତି

**୨। ଜୀବନର ମୋହ ତ୍ୟାଗ କର, କିନ୍ତୁ ଜୀବନକୁ ସମ୍ମାନ ଦିଅ ।**

କାମନା ଜୀବନର ପ୍ରଧାନ ଆକର୍ଷଣ । କାମନା ସ୍ୱାର୍ଥାନ୍ୱେଷୀ । ଏପରି କାମନା-କଳୁଷିତ ଜୀବନର ମୋହ ତ୍ୟାଗ କରିବାକୁ ସାଧକକୁ କୁହାଯାଉଛି । ସାଧାରଣ ଲୋକ ନିଜର ସୁଖ ସମୃଦ୍ଧି ପାଇଁ କାର୍ଯ୍ୟ କରେ । ତାହାପାଇଁ ଏହି କ୍ଷଣସ୍ଥାୟୀ ସୁଖ ସମୃଦ୍ଧି ହିଁ ଜୀବନ । ଏପରି ଜୀବନର ମୋହ ସାଧକ ତ୍ୟାଗ କରେ ; କିନ୍ତୁ ଜୀବନ ପ୍ରତି ବୀତସ୍ପୃହ ହୁଏ ନାହିଁ । ଜୀବନ ଶିକ୍ଷା ଦିଏ ଓ ଆଧ୍ୟାତ୍ମିକ ପଥରେ ସାଧକକୁ ଆଗେଇ ନିଏ । ତେଣୁ ସେ ଶିକ୍ଷାଦାତା ଜୀବନକୁ ସମ୍ମାନ କରେ ।

ସାଧକ ନିଜକୁ ବିଶ୍ୱ ଜୀବନ ସହିତ ଏକ ବୋଲି ମନେକରେ । ପାର୍ଥିବ କାମନା ତ୍ୟାଗ କରିଥିବା ହେତୁ ସାଂସାରିକ ସୁଖ-ସମୃଦ୍ଧି ଲାଳସା ତାହାର ନ ଥାଏ । ସେ କେବଳ ମାନବ ଜାତିର କଲ୍ୟାଣ ପାଇଁ ପରମେଶ୍ୱରଙ୍କ କାର୍ଯ୍ୟକାରୀ ଶକ୍ତି ରୂପେ କାର୍ଯ୍ୟ କରେ । ସେ କାର୍ଯ୍ୟ କରିବାରେ ତାହାର ଅହଂ ଭାବ ନ ଥାଏ ।

ଆଧ୍ୟାତ୍ମିକ ଊର୍ଦ୍ଧ୍ୱଗାମୀ ପଥରେ ଚଣ୍ଡାଳଠାରୁ ଋଷି ପର୍ଯ୍ୟନ୍ତ ସମସ୍ତେ ଜୀବନର ବିଭିନ୍ନ ସ୍ତରରେ ଅଛନ୍ତି । ସମସ୍ତେ ଏକ ବିଶ୍ୱଜୀବନର ବିଭିନ୍ନ ପରିପ୍ରକାଶ । ତେଣୁ, ବିଶ୍ୱ ଜୀବନ ସହିତ ନିଜକୁ ଏକ ମନେ କରୁଥିବା ସାଧକ କାହାରିକୁ ହୀନ ଦୃଷ୍ଟିରେ ବିଚାର କରିବା ଅନୁଚିତ । ସେ ଜୀବନର ନିମ୍ନ ପରିପ୍ରକାଶ ସହିତ ଜଡ଼ିତ ନ ହେଲେ ମଧ୍ୟ ଜୀବନକୁ ସମ୍ମାନ ଦେବା ଉଚିତ । ଜୀବନର ନିମ୍ନ ପରିପ୍ରକାଶ ପ୍ରକୃତିର କ୍ରମ ବିକାଶ ଯୋଜନାରେ ଜୀବନର ଉଚ୍ଚତମ ପରିପ୍ରକାଶରେ ପରିଣତ ହେବ । ତେଣୁ ଜୀବନର ନିମ୍ନ ପରିପ୍ରକାଶର ଆବଶ୍ୟକତା ଅଛି । ତାହା ଅକାରଣ କିମ୍ବା ବ୍ୟର୍ଥ ନୁହେଁ । ଜୀବନର ନିମ୍ନ ଓ ଉଚ୍ଚ ପରିପ୍ରକାଶରେ କେବଳ ସମୟର ବ୍ୟବଧାନ । ଏହି ବିଚାରରେ ସାଧକ ସମସ୍ତଙ୍କ ପ୍ରତି ସ୍ନେହ, ଶ୍ରଦ୍ଧା ଓ ସହାନୁଭୂତି ପୋଷଣ କରେ ।

ପ୍ରତ୍ୟେକ ପ୍ରାଣୀଠାରେ ଜୀବନ ଏକ, କେବଳ ପରପ୍ରକାଶ ଭିନ୍ନ । ପରପ୍ରକାଶ ପ୍ରାଣୀର ସ୍ତର ଉପରେ ନିର୍ଭର କରେ । ମନୁଷ୍ୟ କ୍ଷେତ୍ରରେ ମଧ୍ୟ ଏହି ନିୟମ ପ୍ରଯୁଜ୍ୟ । ଏଥିରୁ ସାଧକ ସହନଶୀଳତା, କରୁଣା ଇତ୍ୟାଦି ଶିକ୍ଷା କରେ ।

ପ୍ରତ୍ୟେକ ସାଧାରଣ ଲୋକ କେତେକ କ୍ଷେତ୍ରରେ ଭଲ ଓ କେତେକ କ୍ଷେତ୍ରରେ ମନ୍ଦ । ସାଧକ ମନ୍ଦକୁ ସହାନୁଭୂତି ସହିତ ବିଚାର କରେ ଓ ମାନବ ସମାଜରୁ ମନ୍ଦକୁ ଦୂର କରିବାରେ ସାହାଯ୍ୟ କରେ । ମନ୍ଦ କାର୍ଯ୍ୟ କରୁଥିବା ଲୋକକୁ ଘୃଣା କରେ ନାହିଁ । ସେ ଜାଣେ ଯେ ଅତୀତରେ ସେ ନିଜେ ମନ୍ଦ ଥିଲା ଓ ବର୍ତ୍ତମାନ ଯେ ମନ୍ଦ ଅଛି ଭବିଷ୍ୟତରେ ସେ ଭଲ ହେବ ।

**୩ । ସୁଖ ସ୍ୱାଚ୍ଛନ୍ଦ୍ୟ ତ୍ୟାଗ କର, କିନ୍ତୁ ସୁଖ ସ୍ୱାଚ୍ଛନ୍ଦ୍ୟ ଭୋଗ କରୁଥିବା ଲୋକ ପର ସୁଖୀ ହୁଅ ।**

ସୁଖ ସ୍ୱାଚ୍ଛନ୍ଦ୍ୟ ତ୍ୟାଗ କରିବାର ଅର୍ଥ ଏହା ନୁହେଁ ଯେ ସାଧକ ନିଜର ଶରୀରକୁ ଅକାରଣ କଷ୍ଟ ଦେବ । ଗୀତାର ୧୭ଶ ଅଧ୍ୟାୟ ୬ଷ୍ଠ ଶ୍ଳୋକରେ କୁହାଯାଇଛି ଯେ ଯେଉଁ ଲୋକ ନିଜ ଶରୀରକୁ କଷ୍ଟ ଦିଏ ସେ ତାହାର ଶରୀରରେ ଥିବା ଈଶ୍ୱରଙ୍କୁ କଷ୍ଟ ଦିଏ । ସତ୍ କାର୍ଯ୍ୟ କିମ୍ବା ଆମର କର୍ତ୍ତବ୍ୟ ପାଳନ କରିବାରେ ଶରୀରର କଷ୍ଟ ଆବଶ୍ୟକ ଓ ସେପରି ସ୍ଥଳେ ଆମେ ଆମର ସୁଖ ସ୍ୱାଚ୍ଛନ୍ଦ୍ୟକୁ ପ୍ରତିବନ୍ଧକ ହେବାକୁ ଦେବୁ ନାହିଁ । କିନ୍ତୁ ଆଧ୍ୟାତ୍ମିକ ପ୍ରଗତି ପାଇଁ ଶରୀରକୁ କଷ୍ଟ ଦେବା ନିରର୍ଥକ ।

ସାଧକ ପ୍ରଥମେ ଶାରୀରିକ ସୁଖ ସ୍ୱାଚ୍ଛନ୍ଦ୍ୟ ତ୍ୟାଗ କରେ । ପରେ କାମ-ମାନସ ସହିତ ସଂପୃକ୍ତ କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟ ରିପୁଗୁଡ଼ିକ ତ୍ୟାଗ କରେ । ଶେଷରେ ବୁଦ୍ଧି-ମାନସର ଅହଂ ସନ୍ତୋଷ ତ୍ୟାଗ କରେ ।

ଏସବୁ ତ୍ୟାଗ କରିବାରେ ଯେଉଁ ବିପଦ ଅଛି ସେଥିପ୍ରତି ସାଧକ ସାବଧାନ ହେବା ଉଚିତ । ପ୍ରଥମ ବିପଦ ହେଉଛି କୌଣସି କାର୍ଯ୍ୟ ନ କରିବାର ପ୍ରବୃତ୍ତି । ଦ୍ୱିତୀୟ ବିପଦ ହେଉଛି ଅନ୍ୟମାନଙ୍କୁ ହୀନ ଦୃଷ୍ଟିରେ ଦେଖିବା । ତୃତୀୟ ବିପଦ ହେଉଛି ନିଜକୁ ସୁଖୀ କିମ୍ବା ଅସୁଖୀ ମଧ୍ୟରୁ

କୌଣସି ଅବସ୍ଥାରେ ନ ପାଇବା । ଉପରୋକ୍ତ ପ୍ରକାରେ ସମସ୍ତ ତ୍ୟାଗ କରି ସାଧକ ଦିବ୍ୟ ସନ୍ତୋଷ ଲାଭ କରିବା ଉଚିତ । ଏହା ଲାଭ କରିଥିବା ସାଧକ ସର୍ବଦା ଶାନ୍ତ ଓ ସନ୍ତୋଷରେ ଥାଏ ।

ସାଧକ ସମସ୍ତ ଲୋକଙ୍କ ଦୁଃଖ କଷ୍ଟ ଅନୁଭବ କରେ, ସମ୍ଭବ ହେଲେ ସେମାନଙ୍କ ଦୁଃଖ ଲାଘବ କରିବାକୁ ଚେଷ୍ଟା କରେ, ସମବେଦନା ଜଣାଏ । କିନ୍ତୁ ସେ ଜାଣେ ଯେ ସେମାନେ ନିଜ କର୍ମଫଳ ଭୋଗ କରୁ-ଛନ୍ତି ଓ ସେଥିରୁ ଶିକ୍ଷା ଲାଭ କରୁଛନ୍ତି । ତେଣୁ ସେମାନଙ୍କୁ କରୁଣା ଦୃଷ୍ଟିରେ ଦେଖିଲେ ମଧ୍ୟ ସାଧକ ଅନ୍ତରରେ ଥିବା ଦିବ୍ୟ ସନ୍ତୋଷର ହ୍ରାସ ହୁଏ ନାହିଁ । ଅନ୍ୟର ଦୁଃଖରେ ସାଧକର ମାନସିକ ଭାବପ୍ରବଣତା ହୁଏ ନାହିଁ; ସମବେଦନା ଜନିତ କରୁଣା ହୁଏ । ସାଧକ ଅବସାଦ ପରିତ୍ୟାଗ କରିବା ଉଚିତ୍ । ଅବସାଦ ସାଧକର ଆଧ୍ୟାତ୍ମିକ ପଥରେ ବାଧା ସୃଷ୍ଟି କରେ । ବିଚଳିତ ହେଲେ ଅନ୍ତରର ସନ୍ତୋଷ ନଷ୍ଟ ହୁଏ । ତେଣୁ ସାଧକ କୌଣସିଥିରେ ବିଚଳିତ ହୁଏ ନାହିଁ । ସେ ଜାଣେ ଯେ ଯାହା ହେଉଛି ବା ଘଟୁଛି ତାହା ସାମୂହିକ ମଙ୍ଗଳ ପାଇଁ ହେଉଛି ।

ମହାତ୍ମା ହିଲାରିଅନ୍ ଏ ସମ୍ପର୍କରେ କହିଛନ୍ତି—

**୪ । ସାଧକ ତାହାର ଅନ୍ତରରେ ଥିବା ସମସ୍ତ ପ୍ରକାର ଅସତ୍‌ର ମୂଳ ଉତ୍ପାଟନ କରିବା ଆବଶ୍ୟକ । ସାଧୁ ଓ ଦୁଷ୍ଟ ସମସ୍ତଙ୍କ ଅନ୍ତରରେ ଅସତ୍‌ର ବୀଜ ଥାଏ । ଆଧ୍ୟାତ୍ମିକ ଉଚ୍ଚ ଶକ୍ତି ସମ୍ପନ୍ନ ଲୋକ ଏହି ବୀଜ ବା ମୂଳକୁ ନଷ୍ଟ କରିପାରେ । ସାଧାରଣ ଲୋକ ଏହାକୁ ଅଙ୍କୁରିତ ହେବାକୁ ଛାଡିଦିଏ ଓ ଏହା କ୍ରମଶଃ ବୃଦ୍ଧିଲାଭ କରି ଫଳପ୍ରଦାନ କରେ । ପ୍ରକୃତିର ବିକାଶ ନିୟମରେ ବହୁ କାଳରେ ଏହା ନଷ୍ଟ ହୁଏ ଓ ସେ ପର୍ଯ୍ୟନ୍ତ ସାଧାରଣ ଲୋକକୁ ଆଧ୍ୟାତ୍ମିକ ପଥ ପାଇଁ ଅପେକ୍ଷା କରିବାକୁ ପଡ଼େ । ସାଧକ ଆଧ୍ୟାତ୍ମିକ ପଥର ପଥିକ । ତେଣୁ ସେ ତାହାର ଅନ୍ତରରେ ଥିବା ଅସତ୍‌ର ମୂଳ ଉତ୍ପାଟନ କରିବା ଆବଶ୍ୟକ । ଏହା କରିବାକୁ ତାହାକୁ ମରଣାନ୍ତକ ଯନ୍ତ୍ରଣା ଭୋଗ କରିବାକୁ ହୁଏ, କିନ୍ତୁ ତାହା ଆବଶ୍ୟକ । ଏହା ଆଧ୍ୟାତ୍ମିକ ଅନନ୍ତ ଜୀବନ ସୋପାନର**

**ପ୍ରଥମ ପାବଚ୍ଛ । ବର୍ତ୍ତମାନ ଓ ଭବିଷ୍ୟତକୁ ତ୍ୟାଗ କରି ସେ ଚିରନ୍ତନ ଜୀବନରେ ପ୍ରତିଷ୍ଠିତ ହେବା ଆବଶ୍ୟକ । ସେପରି ସ୍ଥିତି ଲାଭ କରି ପାରିଲେ ଅସତ୍‌ର ବୀଜ ଲୋପ ପାଇବ ।**

ଅହଂ ଭାବରୁ ସ୍ୱାର୍ଥର ଉତ୍ପତ୍ତି । ସ୍ୱାର୍ଥରୁ ଅସତ୍‌ର ଉତ୍ପତ୍ତି । ତେଣୁ ଅହଂକାରର ମୂଳ ଉତ୍ପାଟନ କରିବା ଦରକାର । ଆଦିମ ମନୁଷ୍ୟର ପ୍ରଗତି ପାଇଁ ଅହଂକାର ଆବଶ୍ୟକ ଥିଲା । ସେ ନିଜକୁ ଅନ୍ୟମାନଙ୍କଠାରୁ ଭିନ୍ନ ଦୃଷ୍ଟିରେ ଦେଖିବା ଦରକାର ଥିଲା ଓ ଶରୀର ରକ୍ଷା ପାଇଁ ତାହାକୁ ସ୍ୱାର୍ଥପର ହେବାକୁ ପଡ଼ୁଥିଲା । ଆଧୁନିକ ମନୁଷ୍ୟ ଆଦିମ ମନୁଷ୍ୟଠାରୁ ବହୁ ଉଚ୍ଚ ସ୍ଥାନକୁ ଆସିଥିଲେ ମଧ୍ୟ ତାହାର ଆଦିମ ସ୍ୱାର୍ଥପରତା ଛାଡ଼ି ପାରିନାହିଁ । ଶାରୀରିକ, କାମ-ମାନସିକ ଓ ବୁଦ୍ଧି-ମାନସିକ ସ୍ତରରେ ଏହି ଅହଂଭାବ ସ୍ଥୂଳ ବା ସୂକ୍ଷ୍ମ ଭାବରେ ରହିଛି । ତେଣୁ ମାନବ କଲ୍ୟାଣ ଭାବନା ଖୁବ୍ ବେଶି ବୁଦ୍ଧି-ମାନସ ପର୍ଯ୍ୟନ୍ତ ଯାଇ ପାରୁଛି । କିନ୍ତୁ ସାଧକର ଅହଂଭାବ ସମସ୍ତ ସ୍ତରରେ ଲୋପ ପାଇ ଅନ୍ତରରେ ନିଜକୁ ଅନ୍ୟମାନଙ୍କ ସହିତ ଏକ ଓ ଅନ୍ୟମାନଙ୍କୁ ନିଜ ସହିତ ଏକ ବୋଲି ଅନୁଭବ କରିବା ଉଚିତ । ସାଧନା ଆରମ୍ଭରୁ ଏହା କରିବା ଦରକାର, କାରଣ ଅସତ୍‌କୁ ମୂଳରୁ ବିନାଶ ନ କଲେ ତାହା ନିଶ୍ଚିତ ଭାବରେ କୌଣସି ସ୍ତରରେ ମୁକୁଳିତ ହୋଇ ବୃଦ୍ଧି ଲାଭ କରିବ ଓ ତାହାକୁ ବିନାଶ କରିବା ଅତ୍ୟନ୍ତ କଷ୍ଟକର ହେବ ।

ଏକମାତ୍ର ପରମେଶ୍ୱର ଚିରନ୍ତନ ଜୀବନରେ ପ୍ରତିଷ୍ଠିତ । ସାଧକ କେବଳ ଚିରନ୍ତନ ଜୀବନ ସହିତ ଏକ ହେବାକୁ ଚେଷ୍ଟା କରିପାରେ । ଅତୀତର ଭାବନା ତ୍ୟାଗ କରିବାକୁ ହେବ । ଅତୀତ ଫେରି ଆସିବ ନାହିଁ ଓ ଅତୀତ ପାଇଁ କ୍ଷୋଭ କରିବାରେ ଲାଭ ନାହିଁ, ବରଂ କ୍ଷତି ଅଛି । ବାରମ୍ବାର ଅତୀତର ଭାବନା ଏକ ସ୍ଥାଣୁ ଅବସ୍ଥା ଆଣିଦିଏ । ତାହାଦ୍ୱାରା ପ୍ରଗତି ବାଧାପ୍ରାପ୍ତ ହୁଏ । ବର୍ତ୍ତମାନର ସ୍ଥିତି ଏକ ମାୟା । ପ୍ରତ୍ୟେକ ବର୍ତ୍ତମାନ ମୁହୂର୍ତ୍ତ ସଙ୍ଗେ ସଙ୍ଗେ ଅତୀତ ହୋଇଯାଉଛି । କେବଳ ଚିରନ୍ତନ ଜୀବନ ଓ ଚିରନ୍ତନ ସମୟ ଅଛି । ସମୟର ପ୍ରବାହ ଭବିଷ୍ୟତକୁ ଗତି କରୁଛି । ତେଣୁ ସେଥିପାଇଁ ନିଜକୁ ପ୍ରସ୍ତୁତ କରିବା କର୍ତ୍ତବ୍ୟ । ବର୍ତ୍ତମାନ ମାୟାଯୁକ୍ତ ହେଲେ ମଧ୍ୟ ଚିରନ୍ତନ-ବର୍ତ୍ତମାନ ମାୟାମୁକ୍ତ ।

## ପଞ୍ଚମ ଅଧ୍ୟାୟ—୫ମ ରୁ ୮ମ ଉକ୍ତି

**୫ । ଅନ୍ୟମାନଙ୍କଠାରୁ ପୃଥକ ଥିବା ଭାବନା ଲୋପ କର । କିନ୍ତୁ, ନିଜଗୋଡ଼ରେ ଏକାକୀ ଠିଆ ହୁଅ, କାରଣ ଆଧ୍ୟାତ୍ମିକ ପଥରେ କେହି ତୁମକୁ ସାହାଯ୍ୟ କରିପାରିବେ ନାହିଁ । ଏକମାତ୍ର ଚିରନ୍ତନ ପରମେଶ୍ୱରଙ୍କ ଶକ୍ତି ତୁମକୁ ସାହାଯ୍ୟ କରିବ ।**

ସାଧାରଣ ଲୋକର ପୃଥକ୍ ଭାବନା ତାହାର କାମନା ଓ କାର୍ଯ୍ୟରେ ପ୍ରକାଶ ପାଏ । ସେ ନିଜର ଓ ନିଜ ଲୋକଙ୍କ ପାଇଁ ଚିନ୍ତା କରେ ଓ କାର୍ଯ୍ୟ କରେ । ଅନ୍ୟମାନଙ୍କୁ ପର ବୋଲି ମନେ କରେ । ନିଜର ଓ ନିଜ ଲୋକଙ୍କ ସୁଖ ଦୁଃଖରେ ସେ ଜଡ଼ିତ ଥାଏ ; ଅନ୍ୟମାନଙ୍କ ସୁଖ ଦୁଃଖରୁ ଦୂରେଇ ଯାଏ । ନିଜର ଓ ନିଜ ଲୋକଙ୍କ ଧନ, ଖ୍ୟାତି, ସମ୍ମାନ ଓ କ୍ଷମତା ପାଇଁ ଗର୍ବ କରେ ଓ ଅନ୍ୟମାନଙ୍କ ପାଇଁ ଉଦାସୀନ ରୁହେ ।

ପ୍ରଥମ ଦୀକ୍ଷା ନେବା ପରେ ଦୀକ୍ଷିତ ଅନ୍ୟମାନଙ୍କଠାରୁ ପୃଥକ୍ ଥିବା ଭାବନା ଲୋପ କରିବାକୁ ଚେଷ୍ଟା କରେ ; ନଚେତ୍ ଦ୍ୱିତୀୟ ଦୀକ୍ଷା ମିଳେ ନାହିଁ । ଦଶଟି ପ୍ରତିବନ୍ଧକ ମଧ୍ୟରୁ ଏହା ପ୍ରଥମ । ପ୍ରଥମ ଦୀକ୍ଷା ନେବା ସମୟରେ ସାଧକକୁ ବୁଦ୍ଧି ସ୍ତରକୁ ମୁହୂର୍ତ୍ତକ ପାଇଁ ନିଆଯାଏ ଓ ତାହାର ଅନ୍ୟମାନଙ୍କ ସହିତ ଏକତାର ଅନୁଭୂତି ହୁଏ । ଏହି ଅନୁଭୂତିକୁ ଦୃଢ଼ କରିବାକୁ ପଡ଼େ । ତାହାର ଚେତନାରେ ପୃଥକ୍‌ଭାବ ଏକ ମାୟା ବୋଲି ପ୍ରକାଶ ପାଏ ।

ପ୍ରତ୍ୟେକ ଦୀକ୍ଷିତ ଶିଷ୍ୟକୁ ଚତୁର୍ଥ ଦୀକ୍ଷା ସମୟରେ ଏହାର ପରୀକ୍ଷା ଦେବାକୁ ପଡ଼େ । ସେ ସମସ୍ତଙ୍କଠାରୁ ବିଚ୍ଛିନ୍ନ ହୋଇଯାଏ । ସମ୍ପୂର୍ଣ୍ଣ ଏକାକୀ ଅବସ୍ଥାରେ କେହି ତାହାକୁ ସାହାଯ୍ୟ କରିବାକୁ ଆସନ୍ତି ନାହିଁ । ଏପରିକି ତାହାର ଗୁରୁ ମଧ୍ୟ କୌଣସି ସାହାଯ୍ୟ କରନ୍ତି ନାହିଁ । ସେ ସମୟରେ ଦୀକ୍ଷିତର ଆତ୍ମ ବିଶ୍ୱାସ ଓ ଆତ୍ମନିର୍ଭରଶୀଳତାର ପରୀକ୍ଷା ହୁଏ । ଯଦି ଦୀକ୍ଷିତ ଉପଲବ୍ଧି କରିଥାଏ ଯେ ଅନନ୍ତ ଜୀବନର ସେ ଗୋଟିଏ

ପରିପ୍ରକାଶ ମାତ୍ର, ଜୀବନ ପ୍ରବାହରେ ସମସ୍ତେ ତାହା ସହିତ ଏକ ଓ ବିଚ୍ଛିନ୍ନତା ଏକ ମାୟା, ତାହା ହେଲେ ସେ ବିଚଳିତ ହୁଏ ନାହିଁ ଓ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୁଏ ।

ସାଧକ ଏକାକୀ ଥିଲେ ମଧ୍ୟ ତାହା କେବଳ ଶାରୀରିକ, କାମିକ ଓ ମାନସିକ । ଆତ୍ମିକ ସ୍ତରରେ ସେ ପରମାତ୍ମାଙ୍କ ଅଂଶ ରୂପେ ଅନ୍ୟମାନଙ୍କ ସହିତ ଏକ । ତେଣୁ ପ୍ରତ୍ୟେକ ମାନବ ତାହାର ଆପଣାର । ସମସ୍ତଙ୍କୁ ସେ ସହାନୁଭୂତି ସହିତ ଦେଖେ ଓ ସାହାଯ୍ୟ କରିବାକୁ ଚେଷ୍ଟା କରେ । ନିର୍ବାଣ ଲାଭ କରିଥିବା ମନୁଷ୍ୟ ପ୍ରତ୍ୟକ୍ଷଭାବେ ଜାଣିପାରେ ଯେ ତାହାର ଭାବନା, ବୁଦ୍ଧି, ଭକ୍ତି ଓ ଚେତନା ବାସ୍ତବରେ ପରମେଶ୍ୱରଙ୍କର ଓ ସେ କେବଳ ତାହାର ବାହକ ।

ନିଜ ଗୋଡ଼ରେ ଏକାକୀ ଠିଆ ହେବାର ଅର୍ଥ ଆତ୍ମନିର୍ଭରଶୀଳ ହେବା । ଆଧ୍ୟାତ୍ମିକ ସ୍ତରରେ ଗୁରୁ ଉପଦେଶ ଦେଇ ସାହାଯ୍ୟ କରନ୍ତି । କିନ୍ତୁ ଚେତନାର ବିକାଶ ପାଇଁ ସାଧକକୁ ନିଜେ ଚେଷ୍ଟା କରିବାକୁ ହୁଏ । ଗୁରୁ ପରମେଶ୍ୱରଙ୍କ ପ୍ରତୀକ । ସାଧକ ତାହାଙ୍କଠାରୁ ବାସ୍ତବିକ ପୃଥକ୍ ହୁଏ ନାହିଁ । କିନ୍ତୁ ପରୀକ୍ଷାର ସମ୍ମୁଖୀନ ହେବା ବେଳେ ଗୁରୁଙ୍କଠାରୁ ବିଚ୍ଛିନ୍ନ ହେବାପରି ମନେହୁଏ । ଏ ସମୟର ଅବସ୍ଥାକୁ ଅବିଚ୍ଛ କୁହାଯାଏ । ଏହା ଏକ ଭୟଙ୍କର ଅନୁଭୂତି; କାରଣ ସାଧକ ନିଜକୁ ଜୀବନ ପ୍ରବାହର ବହିର୍ଭୂତ ବୋଲି ଅନୁଭବ କରେ । ଏହି ଭୟଙ୍କର ଅନୁଭୂତି ସାଧକପାଇଁ ଆବଶ୍ୟକ; କାରଣ ସମସ୍ତ ପ୍ରକାର ଅନୁଭୂତି ଲାଭ ନ କଲେ ସେ ଅଶେଖ ହୋଇ ପାରିବ ନାହିଁ । ଏହି ପରୀକ୍ଷାରେ ସାଧକ ଉପଲବ୍ଧି କରିବା ଆବଶ୍ୟକ ଯେ ପରମେଶ୍ୱର ସର୍ବତ୍ର ସର୍ବଦା ବିଦ୍ୟମାନ, ତେଣୁ ସେ ତାହାଙ୍କଠାରୁ ବିଚ୍ଛିନ୍ନ ହୋଇପାରେନା ।

ମହାତ୍ମା ହିଲାରିଅନ୍ ଏ ସମ୍ପର୍କରେ କହିଛନ୍ତି—

**ଦୁଷ୍ଟ କିମ୍ବା ମୂର୍ଖ ଲୋକଠାରୁ ନିଜକୁ ପୃଥକ୍ ମନେକର ନାହିଁ । ସେମାନେ ତୁମ ସଙ୍ଗେ ଏକ, ଯଦିଓ ତୁମର ବନ୍ଧୁ କିମ୍ବା ଗୁରୁଙ୍କ ସହିତ ତୁମର ଏକତ୍ୱର ମାତ୍ରା ଅଧିକ । ପାପୀଠାରୁ ନିଜକୁ ପୃଥକ୍ ମନେ କରିବା ଦ୍ୱାରା ଏପରି କର୍ମ ଉତ୍ପୁଜେ ଯାହାକି ତୁମର**

**ସେମାନଙ୍କ ସହିତ ଏକତ୍ୱବୋଧ ନ ଆସିବା ପର୍ଯ୍ୟନ୍ତ ତୁମକୁ ସେମାନଙ୍କ ସହିତ ବାନ୍ଧି ରଖେ ।**

ଏକତ୍ୱର ମାନେ ଅଛି । ତେଣୁ ପୃଥକ୍ ଥିବାର ମାନେ ମଧ୍ୟ ଅଛି । ଆତ୍ମା ସ୍ତରରେ ସବୁ ମନୁଷ୍ୟ ଏକ । କିନ୍ତୁ ସ୍ଥୂଳ, କାମ ଓ ନିମ୍ନ ମାନସ ସ୍ତରଗୁଡ଼ିକରେ ସବୁ ମନୁଷ୍ୟ ଏକ ନୁହନ୍ତି । ସମଗ୍ର ମାନବ ଜାତି ପ୍ରକୃତିର ବିକାଶ ଯୋଜନାର ବିଭିନ୍ନ ପାବଚ୍ଛରେ ଅଛନ୍ତି । ସବୁ ଆତ୍ମା ଏକ ସ୍ତରର ହୋଇଥିବାରୁ ଉଚ୍ଚତର ପାବଚ୍ଛରେ ଥିବା ଲୋକ ନିମ୍ନ ପାବଚ୍ଛରେ ଥିବା ଲୋକଠାରୁ ପୃଥକ୍ ମନେ କରିବା ଉଚିତ୍ ନୁହେଁ । ମାନବ ଜାତି ଗୋଟିଏ ପରିବାର ସଦୃଶ । ଗୋଟିଏ ପରିବାରରେ ବଡ଼ ସାନକୁ ନିଜଠାରୁ ପୃଥକ୍ ମନେ କରେ ନାହିଁ; ସାନର ପ୍ରଗତିରେ ସାହାଯ୍ୟ କରେ । ମାନବ ଜାତି ପାଇଁ ଏହା ପ୍ରଯୁଜ୍ୟ ।

ପ୍ରତ୍ୟେକ ଲୋକ ତାହାର ନିଜ ସ୍ତରରେ କାର୍ଯ୍ୟ କରୁଛି । ପ୍ରତ୍ୟେକ ଲୋକର କାର୍ଯ୍ୟ ମାନବ ଜାତିର କାର୍ଯ୍ୟ । ମାନବ ଜାତିର ସମୂହ ପ୍ରଗତି ପାଇଁ ପ୍ରତ୍ୟେକ ଲୋକର କାର୍ଯ୍ୟର ଆବଶ୍ୟକତା ଅଛି । ମନ୍ଦ କାର୍ଯ୍ୟର ମଧ୍ୟ ଆବଶ୍ୟକତା ଅଛି । ପୁଣ୍ୟ ସ୍ତରକୁ ଗତି କରିବାକୁ ହେଲେ ପାପର ପାବଚ୍ଛ-ଗୁଡ଼ିକୁ ଅତିକ୍ରମ କରିବାକୁ ହୁଏ । ପୁଣ୍ୟବାନ୍ ଲୋକ ଅତୀତରେ ପାପୀ ଥିଲା । ବର୍ତ୍ତମାନର ପାପୀଠାରୁ ସେ ଆତ୍ମା ସ୍ତରରେ ପୃଥକ୍ ନୁହେଁ । ସମସ୍ତେ ଆତ୍ମା ସହିତ ସଂଯୁକ୍ତ ଓ ଆତ୍ମାର ପାପ କିମ୍ବା ପୁଣ୍ୟ ନାହିଁ । ପାପ ଓ ପୁଣ୍ୟ କେବଳ ସ୍ଥୂଳ, କାମ ଓ ନିମ୍ନ ମାନସ ସ୍ତରଗୁଡ଼ିକରେ ସୀମିତ । ସାଧକ ଉଚ୍ଚ ସ୍ତରର ମାନବଠାରୁ ସାହାଯ୍ୟ ଗ୍ରହଣ କରେ ଓ ନିମ୍ନ ସ୍ତରର ଲୋକଙ୍କୁ ସାହାଯ୍ୟ ଦାନ କରେ ।

ଚିକିତ୍ସକ ପାଖକୁ ଅନେକ ଲୋକ ବିଭିନ୍ନ ପ୍ରକାର ରୋଗରେ ଆକ୍ରାନ୍ତ ହୋଇ ଚିକିତ୍ସା ପାଇଁ ଆସନ୍ତି । କେତେକ ରୋଗ ସଂକ୍ରାମକ । କେତେକ ରୋଗ ନଷ୍ଟ ଚରିତ୍ରରୁ ଜାତ । କେହି କେହି ଚୋର, ଠକ, ନିଷ୍ଠୁର ବା ନରହନ୍ତା । ଚିକିତ୍ସକ ରୋଗ ନିର୍ଣ୍ଣୟ କରନ୍ତି ଓ ଚିକିତ୍ସା କରନ୍ତି । ପାପ ପୁଣ୍ୟର ବିଚାର କରନ୍ତିନାହିଁ । ନିଜେ ସଂକ୍ରମିତ ନ ହେବାର ବ୍ୟବସ୍ଥା କରି ସଂକ୍ରାମକ ରୋଗର ଚିକିତ୍ସା କରନ୍ତି । ତାହାଙ୍କ ପାଖରେ ସବୁ

ରୋଗୀ ସମାନ । ଚିକିତ୍ସା କରିବା ପାଇଁ ତାହାଙ୍କୁ ନିଜେ ରୋଗୀ ସ୍ତରକୁ ଯିବାକୁ ପଡ଼େ ନାହିଁ । ଏହି ମନୋଭାବ ସାଧକ ପକ୍ଷରେ ଉପଯୋଗୀ ।

ଅନ୍ୟମାନଙ୍କ ପାପ, ଦୋଷ, ଦୁର୍ବଳତା ଇତ୍ୟାଦି ଆମ ଗୋଚରକୁ ଆସେ ଓ ଆମେ ସେମାନଙ୍କଠାରୁ ଦୂରେଇ ଯିବାକୁ ଚାହୁଁ । କାରଣ, ଆମେ ନିଜେ ଅଜ୍ଞାତରେ ସେହିସବୁ ଅବାଂଛିତ ଦୋଷରେ ଲିପ୍ତ ଥିଲୁ ଓ ତାହାର କୁଫଳରୁ ଶିକ୍ଷାଲାଭ କରି ସେସବୁ ଦୋଷରୁ ନିଜକୁ ମୁକ୍ତ ରଖିବାକୁ ଚାହୁଁଛୁ । ମନ୍ଦ ଲୋକର ସଙ୍ଗ ତ୍ୟାଗ କରାଯାଇପାରେ, କିନ୍ତୁ ତାହାଙ୍କୁ ଘୃଣା କରିବାରେ କୁକର୍ମ ଜାତ ହୁଏ । ଯଦି ସମ୍ଭବ ହୁଏ ମନ୍ଦ ଲୋକକୁ ଭଲ ବାଟକୁ ଆଣିବାକୁ ଚେଷ୍ଟା କରିବା ଉଚିତ ।

ମହାତ୍ମା ହିଲରିଅନ୍ ପୁଣି କହିଛନ୍ତି—

**ମାନବ ଜାତିର ସମୂହ ପାପ ଓ ଲଜ୍ଜାରେ ତୁମେ ଅଂଶୀଦାର, କାରଣ ମାନବ ଜାତିର ତୁମେ ଏକ ଅଂଶ । ତୁମର କର୍ମ ମାନବ ଜାତିର ସମୂହ କର୍ମ ସହିତ ଜଡ଼ିତ ।**

**ପ୍ରଜ୍ଞା ଲାଭ କରିବା ପୂର୍ବରୁ ତୁମକୁ ପରିଷ୍କାର ଓ ଅପରିଷ୍କାର ସମସ୍ତ ଅବସ୍ଥା ମଧ୍ୟରେ ଗତି କରିବାକୁ ହେବ । ଯେଉଁ ଅପରିଷ୍କାର ପରିଚ୍ଛଦ ତୁମେ ଛୁଇଁବାକୁ ପଛଉଛ ସେହି ପରିଚ୍ଛଦ ଗତକାଲି ତୁମର ଥିଲା କିମ୍ବା ଆସନ୍ତା କାଲି ତୁମର ହୋଇପାରେ । ତୁମେ ଯେତେ ଆତଙ୍କିତ ହୋଇ ତାହାଠାରୁ ଦୂରେଇ ଯିବ ତାହା ସେତିକି ନିବିଡ଼ ଭାବରେ ତୁମଠାରେ ଜଡ଼ିତ ହେବ । ନିଜକୁ ଯଥାର୍ଥ ମନେ କରୁଥିବା ପ୍ରତ୍ୟେକ ଲୋକ ନିଜପାଇଁ ଏକ ପଙ୍କର ଶଯ୍ୟା ତିଆର କରେ । ମନ୍ଦରୁ ନିବୃତ୍ତ ହେବା ଉଚିତ, ତେଣୁ ମନ୍ଦକୁ ନିବୃତ୍ତ କରିବ, ନିଜେ ପରିଷ୍କୃତ ରହିବାପାଇଁ ନୁହେଁ ।**

ମାନବ ଜାତିର ସମସ୍ତ ପାପ ଓ ଲଜ୍ଜାକର ପରିସ୍ଥିତି ପାଇଁ ପ୍ରତ୍ୟେକ ମନୁଷ୍ୟ ପରୋକ୍ଷ ଭାବରେ ଦାୟୀ, କାରଣ ପ୍ରତ୍ୟେକ ମନୁଷ୍ୟ ଏହି ଜାତିର ଅଂଶ । ପ୍ରତ୍ୟେକ ମନୁଷ୍ୟର କର୍ମ ମାନବ ଜାତିର ସମୂହ କର୍ମର ଅଂଶ । ସାଧକ ବୁଦ୍ଧି ସ୍ତରକୁ ଗଲେ ଏହା ପ୍ରତ୍ୟକ୍ଷ ଭାବରେ ଜାଣିପାରେ ।

ନିଜର ଶିକ୍ଷା ପାଇଁ ସମସ୍ତ ପ୍ରକାର ପାପ ଓ ମନ୍ଦ କର୍ମରେ ଲିପ୍ତ ହେବାକୁ କୁହାଯାଉ ନାହିଁ । ଜ୍ଞାନବାନ୍ ଓ ବୁଦ୍ଧିମାନ୍ ଲୋକ ଅନ୍ୟର ତିକ୍ତ ଅନୁଭୂତିରୁ ଶିକ୍ଷା ଲାଭ କରେ । ଗୋଟିଏ ଭୁଲ କାର୍ଯ୍ୟରୁ ସେ ଯେଉଁ ଶିକ୍ଷା ପାଏ, ତାହା ସାଧକକୁ ଅନେକ ଭୁଲ କାର୍ଯ୍ୟରୁ ନିବୃତ୍ତ କରେ ।

ବୁଦ୍ଧି ସ୍ତରକୁ ଗଲେ ସାଧକ ସମସ୍ତ ମାନବ ଜାତିର ସତ୍ ଓ ଅସତ୍ ପ୍ରତ୍ୟକ୍ଷ ଭାବେ ଜାଣିପାରେ । ସେ ଗୁରୁଙ୍କ ସହିତ ଏକ ହୋଇ ମାନବ ଜାତିର ଆଧ୍ୟାତ୍ମିକତାର ତୁଙ୍ଗ ଅନୁଭୂତି ପାଏ । ପୁଣି କୁତ୍ସିତ ଓ ନାରକୀୟ କାର୍ଯ୍ୟ କରୁଥିବା ଲୋକ ସହିତ ଏକ ହୋଇ ସେ ତାହାର ମନୋଭାବ ଓ ଅନୁଭୂତି ସହିତ ପରିଚିତ ହୁଏ । ଗୁରୁଙ୍କୁ ସେ ଶ୍ରଦ୍ଧା ଓ ଭକ୍ତି କରେ । ନୀଚ ସ୍ତରର ମାନବକୁ ସେ କରୁଣା କରେ, ଘୃଣା କରେ ନାହିଁ । ଘୃଣା କଲେ ସାହାଯ୍ୟ କରିହୁଏନା । କରୁଣା ଓ ସହାନୁଭୂତି ସହିତ ସାହାଯ୍ୟ କରାଯାଏ । ଅପରିଷ୍କାର ପରିଚ୍ଛଦ ଛୁଇଁବାକୁ ପଛାଇବା ଅର୍ଥ ଘୃଣା କରିବା । ଯେ ଘୃଣା କରେ ସେ ଘୃଣିତ ହେବାର କର୍ମ ଅର୍ଜନ କରେ । ଯେ ଭଲପାଏ ସେ ଭଲ ପାଇବା ଲାଭ କରିବାର କର୍ମ ଅର୍ଜନ କରେ । ଭଲ ପାଇବାଦ୍ୱାରା ଘୃଣା ବିଲୀନ ହୁଏ । ତେଣୁ ସାଧକ ସମସ୍ତ ମାନବ ଜାତିକୁ ଭଲ ପାଇବାକୁ ଓ ସାହାଯ୍ୟ କରିବାକୁ ଶିକ୍ଷା କରିବା ଆବଶ୍ୟକ ।

**୬ । ଇନ୍ଦ୍ରିୟଜନିତ ଅନୁଭୂତି ଲାଭ କରିବାର କାମନା ଲୋପ କର, କିନ୍ତୁ ପ୍ରାପ୍ତ ଅନୁଭୂତିକୁ ସମୀକ୍ଷା କର ଓ ସେଥିରୁ ଶିକ୍ଷା ଲାଭ କର । ଆତ୍ମ-ଜ୍ଞାନର ଆହରଣ କେବଳ ତୁମେ ଆରମ୍ଭ କରିପାରିବ ଓ ଆଧ୍ୟାତ୍ମିକ ପଥରେ ପ୍ରଥମ ପାଦ ତୁମେ ରଖିପାରିବ ।**

ଇନ୍ଦ୍ରିୟଦ୍ୱାରା ଯେଉଁ ଅନୁଭୂତି ଲାଭ ହୁଏ, ତାହା ନିମ୍ନ ସ୍ତରର ଅନ୍ତର୍ଗତ । ସାଧକ ଇନ୍ଦ୍ରିୟାସକ୍ତ ଅନୁଭୂତି ଲାଭ କରିବାର କାମନା ଦୂର କରିବା ଆବଶ୍ୟକ । କିନ୍ତୁ ପ୍ରାପ୍ତ ଅନୁଭୂତିଗୁଡ଼ିକ ବାରମ୍ବାର ମନକୁ ଆସେ । ସେପରି ସ୍ଥଳେ ସାଧକ ତାହାକୁ ଉଚ୍ଚ ମାନସଦ୍ୱାରା ସମୀକ୍ଷା କରି ସେଥିରୁ ଶିକ୍ଷା ଲାଭ କରିବା ଉଚିତ ।

ଅଣ୍ଡାତର ଭାବନା ଅନେକ ସମୟରେ ପ୍ରଲୋଭନ ସୃଷ୍ଟି କରେ । ଉଚ୍ଚ ମାନସ ଦୃଷ୍ଟିରେ ସାଧକ ଶିକ୍ଷା କରେ ଯେ ସେ ଅଣ୍ଡାତର ମାନବ ନୁହେଁ ଓ ପ୍ରଲୋଭନ ତାହାର ନୁହେଁ । ସେ ପ୍ରଲୋଭନର ଉତ୍ସ, ବୃତ୍ତି ଓ ଫଳାଫଳର ମଧ୍ୟ ଜ୍ଞାନ ଲାଭ କରେ । ଏପରି ସାଧନାଦ୍ୱାରା ସେ ପ୍ରଲୋଭନ ଓ ଅନ୍ୟାନ୍ୟ ଅସତ୍ ଶକ୍ତିଗୁଡ଼ିକ ପ୍ରଭାବରୁ ମୁକ୍ତ ହୁଏ ।

ସ୍ଥୂଳ ଜଗତ କାମଲୋକର ରାଗ, ଦ୍ୱେଷ, ନିଷ୍ଠୁରତା, ଯୌନ ପ୍ରବୃତ୍ତି, ଲୋଭ, ଇତ୍ୟାଦି ମନ୍ଦ ପ୍ରଭାବରେ ପରିପୂର୍ଣ୍ଣ । ସାଧାରଣ ଲୋକର କାମନା ଓ ମାନସରୁ ଏସବୁ ଜାତ । ସାଧକ ଏ ସମସ୍ତରୁ ଊର୍ଦ୍ଧ୍ୱରେ ରୁହେ । ଏହି ଉଚ୍ଚ ସ୍ତରରେ ସ୍ଥିତି ଲାଭ କରିବାକୁ ହେଲେ ସାଧକ ସର୍ବଦା ଏହି-ସବୁ ନିମ୍ନ ପ୍ରବୃତ୍ତି ବିରୁଦ୍ଧରେ ସଜାଗ ରୁହେ । ଏଥିରୁ କୌଣସି ପ୍ରବୃତ୍ତି ନିଜଠାରେ ଦେଖାଯିବା ମାତ୍ରେ ସାଧକ ମାନସିକ ସ୍ତରରୁ ତାହାର ମୂଳ ବିନଷ୍ଟ କରେ ।

ଅନ୍ୟମାନଙ୍କ ମାନସିକ ଉତ୍ତେଜନା, କାମୁକ ପ୍ରକୃତି, ମନ୍ଦ ଅଭ୍ୟାସର ପରିଣତି ସମୀକ୍ଷା କଲେ ନିଜର ଅନେକ ଶିକ୍ଷା ହୁଏ । ଏପରି ସମୀକ୍ଷା କରି ନିଜର ଶିକ୍ଷା ଆହରଣ କରିବା ଉଚିତ, କିନ୍ତୁ ଏଥିପାଇଁ ଅନ୍ୟମାନଙ୍କୁ ଘୃଣା ବା ହୀନ ଦୃଷ୍ଟିରେ ଦେଖିବା ଉଚିତ ନୁହେଁ ।

ସାଧାରଣ ଲୋକ ଭାବପ୍ରବଣ । ଏଥିରେ ବ୍ୟକ୍ତିଗତ କିମ୍ବା ସମୂହ ସ୍ୱାର୍ଥ ଜଡ଼ିତ ଥାଏ । ଯୁଦ୍ଧ, ଗୋଷ୍ଠୀ ବିବାଦ, ଜାତିଆଣ ବିବାଦ, ଧର୍ମ ସମ୍ବନ୍ଧୀୟ ବିବାଦ ଇତ୍ୟାଦିରେ ଏହା ଭୀଷଣ ଓ ନିଷ୍ଠୁର ରୂପ ଧାରଣ କରେ । ସାଧାରଣ ଲୋକ ଏଥିରେ ପ୍ରଭାବିତ ହୁଏ । ସାଧକ ଭାବପ୍ରବଣତା ପ୍ରତି ସଜାଗ ଥାଏ ଓ କୌଣସି ପ୍ରକାରେ ପ୍ରଭାବିତ ହୁଏ ନାହିଁ । ଭାବପ୍ରବଣ ମନୁଷ୍ୟଙ୍କୁ ସେ କରୁଣା ଦୃଷ୍ଟିରେ ଦେଖେ ।

ଅନ୍ୟାୟ କିମ୍ବା ମନ୍ଦ କାର୍ଯ୍ୟ କରୁଥିବା ଲୋକ ମାନବ ବିକାଶ ପଥରେ ନିମ୍ନ ସ୍ଥାନରେ ଅଛି । ତାହାର କାର୍ଯ୍ୟର କୁଫଳ ଭୋଗ କରି ସେ ଶିକ୍ଷା ଲାଭ କରିବ । ଅନ୍ୟାୟ ଓ ମନ୍ଦ କାର୍ଯ୍ୟ ବିରୁଦ୍ଧରେ ପ୍ରତିବାଦ କରିବା ଉଚିତ । ମନ୍ଦକୁ ଘୃଣାଦ୍ୱାରା ବିନଷ୍ଟ କରାଯାଇ ପାରେନା । ମନ୍ଦ କାର୍ଯ୍ୟ କରୁଥିବା ଲୋକକୁ ଭଲ ହେବାକୁ ସାହାଯ୍ୟ କରିବା ଉଚିତ ।

**୭-୮ । ନିଜର ପ୍ରଗତି ଲାଭ କରିବାର କାମନା ତ୍ୟାଗ କର । ପୁଷ୍ପ ଯେପରି ନିଜର ଅଜ୍ଞାତରେ ବୃଦ୍ଧି ଲାଭ କରି ତାହାର ଆତ୍ମାକୁ ପବନରେ ମୁକୁଳିତ କରେ, ସେହିପରି ତୁମେ ତୁମର ଆତ୍ମାକୁ ଚିରନ୍ତନରେ ମୁକୁଳିତ କର । ତୁମର ଶକ୍ତି ଓ ସୌନ୍ଦର୍ଯ୍ୟକୁ ଚିରନ୍ତନର ଆକର୍ଷଣକୁ ଛାଡ଼ିଦିଅ, ପ୍ରଗତିର କାମନାକୁ ତ୍ୟାଗ କର । ଚିରନ୍ତନରେ ତୁମେ ବିଶୁଦ୍ଧତା ପ୍ରାପ୍ତ ହେବ । କାମନାରେ ତୁମେ କେବଳ ନିଜର ବାଂଛିତ ପ୍ରଗତି ଲାଭ କରିବ ।**

ଅନ୍ୟଠାରୁ ଅଧିକ ପ୍ରଗତି କରିବାର କାମନା ଏକ ପ୍ରତିବନ୍ଧକ । ନିଜର ପ୍ରଗତି ଅନୁଧ୍ୟାନ କରିବା ଏକ ପ୍ରତିବନ୍ଧକ । ନିଜକୁ ବଡ଼ ମନେ କରିବା ଏକ ପ୍ରତିବନ୍ଧକ । ଏସବୁ ପ୍ରତିବନ୍ଧକ ଦୂର କରିବାକୁ ହେଲେ ସାଧକ ନିଜର ପ୍ରଗତିକୁ ଦୃଷ୍ଟି ନ ଦେଇ ଚିରନ୍ତନରେ ମିଶିଯିବା ଆବଶ୍ୟକ । ତାହାଦ୍ୱାରା ସେ ମାନବ ଜାତିର ପ୍ରଗତିରେ ସହାୟକ ହେବ ।

ପୁଷ୍ପର ନିଜସ୍ୱ ଜ୍ଞାନ ନ ଥାଏ । ପ୍ରକୃତିର ଚିରନ୍ତନ ନିୟମ ଅନୁସାରେ ସେ ମୁକୁଳିତ ହୁଏ ଓ ନୂତନ ଉଦ୍ଭିଦ ପାଇଁ ମଞ୍ଜି ହେବା ପରେ ମରିଯାଏ । ସେହିପରି ସାଧକ ଚିରନ୍ତନରେ ମୁକୁଳିତ ହୋଇ, ମାନବ କଲ୍ୟାଣ ପାଇଁ କାର୍ଯ୍ୟ କରି, ତାହାର ଅହଂଭାବରୁ ମୁକ୍ତ ହୁଏ ଓ ଅନ୍ୟମାନଙ୍କୁ ପ୍ରେରଣା ଦିଏ ।

## ଷଷ୍ଠ ଅଧ୍ୟାୟ—୯ମ ରୁ ୧୬ଶ ଉକ୍ତି

**୯ । ତୁମର ଅନ୍ତର୍ନିହିତ ସତ୍ତାକୁ ଜାଣିବାର କାମନା ପୋଷଣ କର । ସେହି ସତ୍ତାର ଆଲୋକ ତୁମର ପଥକୁ ଆଲୋକିତ କରିବ । ତାହାକୁ ନିଜ ଅନ୍ତରରେ ଜାଣି ନ ପାରିଲେ ଅନ୍ୟତ୍ର ଅନ୍ୱେଷଣ କରିବା ନିରର୍ଥକ ।**

ପୂର୍ବୋକ୍ତ ଉକ୍ତିଗୁଡ଼ିକରେ ବିଭିନ୍ନ କାମନାକୁ ଲୋପ କରିବାକୁ କୁହାଯାଇଥିଲା । ୯ମ ରୁ ୧୬ଶ ଉକ୍ତିଗୁଡ଼ିକରେ ଯାହା କାମ୍ୟ ସେ ବିଷୟରେ କୁହାଯାଉଛି । ସ୍ୱାର୍ଥ ଜଡ଼ିତ ସମସ୍ତ କାମନା ଲୋପ କରିବା ଆବଶ୍ୟକ । କିନ୍ତୁ ନିଃସ୍ୱାର୍ଥ ଆଧ୍ୟାତ୍ମିକତା କାମ୍ୟ । ଜନ କଲ୍ୟାଣ କରିବାର ଶକ୍ତି ପାଇଁ ନିଜର ଆଧ୍ୟାତ୍ମିକ ପ୍ରଗତି କାମ୍ୟ, ନିଜ ପାଇଁ ନୁହେଁ । ଉଚ୍ଚ ଆଧ୍ୟାତ୍ମିକ ସ୍ତରକୁ ନ ଗଲେ ନିଃସ୍ୱାର୍ଥ ଜନକଲ୍ୟାଣ କରିବାର ଶକ୍ତି ହୁଏ ନାହିଁ । ନିଃସ୍ୱାର୍ଥ ଆଧ୍ୟାତ୍ମିକତାରେ ଅନ୍ୟଠାରୁ ପୃଥକ ଭାବନା ନ ଥାଏ । ସାଧକ ଜାଣେ ଯେ ସେ ମାନବ ଜାତିର ଏକ ଅଂଶ ଓ ସମଗ୍ର ମାନବ ଜାତିର ଉନ୍ନତି ଓ ଅବନତି ସହିତ ସେ ଜଡ଼ିତ ।

ନିଜ ଅନ୍ତରରେ ଥିବା ଲୁକ୍କାୟିତ ସତ୍ତାର ସନ୍ଧାନ ପ୍ରଥମେ କରିବାକୁ ହେବ । ସେହି ସତ୍ତାର ଆଲୋକ ପ୍ରାପ୍ତ ନ ହେଲେ ନିଜର ସମୁଚିତ ଆଧ୍ୟାତ୍ମିକ ପ୍ରଗତି ଲାଭ ହେବ ନାହିଁ । ତେଣୁ ଅନ୍ୟକୁ ସାହାଯ୍ୟ କରି ହେବ ନାହିଁ । ଏ କାର୍ଯ୍ୟରେ କେହି ପ୍ରତ୍ୟକ୍ଷ ସାହାଯ୍ୟ କରିପାରିବେ ନାହିଁ । ମହାତ୍ମାମାନେ କେବଳ ମାର୍ଗ ଦର୍ଶାଇ ଦେବେ, ଉପଦେଶ ଦେବେ । କିନ୍ତୁ ସାଧକ ନିଜର ପ୍ରଗାଢ଼ ବିଶ୍ୱାସ ଓ ଅକ୍ଳାନ୍ତ ଚେଷ୍ଟାଦ୍ୱାରା ତାହାର ଅନ୍ତରରେ ଥିବା ସତ୍ତାର ଆଲୋକ ପ୍ରାପ୍ତ ହେବ ଓ ଶକ୍ତି ଲାଭ କରିବ । ତାହାଦ୍ୱାରା ସେ ଅନ୍ୟମାନଙ୍କୁ ସତ୍ ମାର୍ଗରେ ଯିବାକୁ ଅନୁପ୍ରାଣିତ ଓ ସାହାଯ୍ୟ କରିପାରିବ ।

**୧୦ । ଯାହା ତୁମ ସୀମାର ଊର୍ଦ୍ଧ୍ୱରେ ତାହା କାମନା କର । ତାହା ପ୍ରାପ୍ତ ହେଲେ ତୁମେ ନିଜକୁ ହରାଇବ ।**

ଆଧ୍ୟାତ୍ମିକ କ୍ରମ ବିକାଶରେ ସାଧକ କ୍ରମଶଃ ଉତ୍ତରୋତ୍ତର ଊର୍ଦ୍ଧ୍ୱ ଗତି କରେ । ନିମ୍ନ ସ୍ତରରେ ଥିବାବେଳେ ସେ ତାହାର ଉପର ସ୍ତରକୁ ଯିବାକୁ କାମନା କରେ ଓ ସାଧନା କରେ । ସେହି ଉପର ସ୍ତରରେ ଉପନୀତ ହେଲେ ସାଧକର ନିମ୍ନ ସ୍ତରର ଜୀବନଧାରାର ସମାପ୍ତି ଘଟେ ଓ ଉଚ୍ଚ ସ୍ତରର ଜୀବନଧାରା ଆରମ୍ଭ ହୁଏ । ନିଜକୁ ହରାଇବା ଅର୍ଥ ନିମ୍ନ ସ୍ତରର ଜୀବନଧାରା ହରାଇବା ।

ଆଧ୍ୟାତ୍ମିକ ପ୍ରଗତିର ପ୍ରତ୍ୟେକ ସ୍ତରରେ ଏହା ହୁଏ । ମାନବର ଆଧ୍ୟାତ୍ମିକ ପ୍ରଗତିର ଶେଷ ନାହିଁ । କ୍ରମାନ୍ୱୟେ ମାନସ, ବୁଦ୍ଧି, ଆତ୍ମା ଓ **Monad** ସ୍ତର ପର୍ଯ୍ୟନ୍ତ ପ୍ରଗତି ଶେଷ କରିସାରିବା ପରେ ମଧ୍ୟ ଆହୁରି ଉଚ୍ଚତର ସ୍ତରକୁ ଯିବାକୁ ସାଧନା କରିହୁଏ । ଏହା ଏତେ ବିରାଟ ଯେ ଏହାର ଶେଷ କେଉଁଠି ଓ କିପରି ତାହା କଳ୍ପନାତୀତ । ପ୍ରଗତିର ଗୋଟିଏ ସ୍ତରରେ ଉପନୀତ ହେଲେ ସେ ସ୍ତରର ନୂତନ ଜୀବନଧାରା ଆରମ୍ଭ ହୁଏ ଓ ତ୍ୟାଗ କରିଥିବା ନିମ୍ନ ସ୍ତରର ଜୀବନଧାରାର ଅବସାନ ଘଟେ ।

**୧୧-୧୬ । ଯାହା ସର୍ବଦା ଅପ୍ରାପ୍ତ ତାହାର ପ୍ରାପ୍ତି ପାଇଁ କାମନା କର । ତାହା ଚିର ଅପ୍ରାପ୍ତ କାରଣ ତାହା ସର୍ବଦା ଦୂରେଇ ଯାଉଛି । ତୁମେ ଆଲୋକରେ ପ୍ରବେଶ କରିବ, କିନ୍ତୁ ଅଗ୍ନିଶିଖାକୁ ସ୍ପର୍ଶ କରିପାରିବ ନାହିଁ ।**

ସାଧକ ଉଚ୍ଚରୁ ଉଚ୍ଚତର ସ୍ତରକୁ ଗତି କରେ । ଯାହାକୁ ଉଚ୍ଚତମ ସ୍ତର ବୋଲି ସେ ମନେ କରୁଥିଲା ସେଠାରେ ପ୍ରବେଶ କରି ସେ ଦେଖେ ଯେ ଆହୁରି ଉଚ୍ଚତର ସ୍ତର ଅଛି । ଯେତେ ଉଚ୍ଚ ସ୍ତରକୁ ଗଲେ ମଧ୍ୟ ସେ ଆହୁରି ଉଚ୍ଚତର ସ୍ତର ଥିବାର ଜାଣିପାରେ । ଏହିପରି ସାଧକ ଆଲୋକରେ ପ୍ରବେଶ କରି ଯେତେ ଆଗେଇଲେ ମଧ୍ୟ ଅଗ୍ନିଶିଖା ସ୍ପର୍ଶ କରିପାରେନା । ତାହା ଦୂରେଇ ଯାଉଥାଏ । ଅଗ୍ନିଶିଖା ସ୍ଥାଣୁ ନୁହେଁ । ତାହା ମଧ୍ୟ ବିକାଶ ପଥରେ ଆଗେଇ ଚାଲିଛି । ଅବ୍ୟକ୍ତ ପରମେଶ୍ୱରଙ୍କ ଚେତନାଶକ୍ତି ଅଗ୍ନିଶିଖା ସ୍ୱରୂପ । ତାହା ମନୁଷ୍ୟ ପାଇଁ ଅପ୍ରାପ୍ତ । କିନ୍ତୁ ତାହାର ପ୍ରାପ୍ତି ପାଇଁ କାମନା କଲେ ଆଲୋକରେ ପ୍ରବେଶ କରିବା ସମ୍ଭବ ।

## ସପ୍ତମ ଅଧ୍ୟାୟ – ୧୩୩ଶ ରୁ ୧୭୫ଶ ଉକ୍ତି

**୧୩୩ । ଆଗ୍ରହର ସହିତ ଶକ୍ତି କାମନା କର । କିନ୍ତୁ ସେ ଶକ୍ତି ଏପରି ହେବା ଆବଶ୍ୟକ ଯାହାକି ସାଧାରଣ ଲୋକ ଦୃଷ୍ଟିରେ ତୁଚ୍ଛ ମନେହେବ ।**

କର୍ତ୍ତବ୍ୟ ପାଳନରେ ନିଜକୁ ହଜାଇ ଦେବା ଉଚିତ । ଆତ୍ମତୃପ୍ତି ପାଇଁ ମନୁଷ୍ୟ ଫଳ ପ୍ରାପ୍ତିର କାମନା କରେ । ଏପରି କାମନା ସ୍ୱାର୍ଥଜଡ଼ିତ, ତେଣୁ କଳୁଷିତ । ନିଷ୍କାମ କର୍ମରେ ସ୍ୱାର୍ଥ ଜଡ଼ିତ ନ ଥିବାରୁ ତାହା କର୍ମ ବନ୍ଧନ ସୃଷ୍ଟି କରେ ନାହିଁ । ଅଥଚ ଉଚ୍ଚତର ସ୍ତରରେ ତାହାର ସୁଫଳ ମିଳେ । କାରଣ, ପ୍ରତ୍ୟେକ କର୍ମର ଫଳ ଅବଶ୍ୟ ମିଳେ ।

ଶକ୍ତି ନ ଥିଲେ କାର୍ଯ୍ୟ କରିହେବ ନାହିଁ । ତେଣୁ ଶକ୍ତି କାମନା କରିବା ଆବଶ୍ୟକ । କିନ୍ତୁ ସେ କାମନା ନିଃସ୍ୱାର୍ଥ ଜନସେବା କରିବା ପାଇଁ ହେବା ଦରକାର; ନିଜର ନାମ, ଯଶ କିମ୍ବା ଆଧ୍ୟାତ୍ମିକ ପ୍ରଗତି ପାଇଁ ନୁହେଁ । ଆନି ବେସାନ୍ତ ଅକ୍ଲାନ୍ତ ପରିଶ୍ରମ କରୁଥିଲେ । ସେ କହିଛନ୍ତି ଯେ, ସେ ତାଙ୍କର ଗୁରୁଙ୍କ କାମ କରୁଥିଲେ ବୋଲି ସର୍ବଦା ଭାବୁଥିଲେ । ଗୁରୁ ତାହାଙ୍କୁ କିଛି କରିବାକୁ କହି ନ ଥିଲେ । ବରଂ କହିଥିଲେ ଯେ ସେ ଯାହା ଠିକ୍ ମନେ କରୁଛନ୍ତି ତାହା କରନ୍ତୁ । ଆନି ବେସାନ୍ତ ସମସ୍ତ କାର୍ଯ୍ୟ ତାଙ୍କର ଗୁରୁଙ୍କୁ ଅର୍ପଣ କରିଥିଲେ ।

ଆଧ୍ୟାତ୍ମିକ ପଥରେ ସବୁ ପ୍ରକାର କାର୍ଯ୍ୟର ଉପଯୋଗିତା ଅଛି । ସେ ଦୃଷ୍ଟିରୁ ସବୁ କାର୍ଯ୍ୟ ସମାନ । ସେଥିରେ ଉଚ୍ଚ ବା ନିମ୍ନ ସ୍ଥାନ ନାହିଁ । ଯେଉଁ ଲୋକ ସମ୍ପୂର୍ଣ୍ଣ ସ୍ୱାର୍ଥ ତ୍ୟାଗ କରି ସୁଯୋଗ ପାଇବା ମାତ୍ରେ ଅନ୍ୟର ଉପକାର କରୁଛି, ସେ ଅତ୍ୟନ୍ତ ଶକ୍ତିମାନ୍ । କିନ୍ତୁ ସ୍ୱାର୍ଥ ତ୍ୟାଗ କରିଥିବାରୁ ସେ କାହାରିକୁ କିଛି ଜଣାଏ ନାହିଁ । ସେ ତାହାର କାର୍ଯ୍ୟ ସାରି ଚାଲିଯାଏ ।

ମନୁଷ୍ୟ କାରଣ ଶରୀରରେ ଭବିଷ୍ୟତରେ ଯାହା କରିପାରିବ ତାହା ତୁଳନାରେ ନିମ୍ନ ମାନସ ଶରୀରରେ ଯାହା କରିପାରିଛି ତାହା ଅତି

ଭୂଛ । ବିଜ୍ଞାନର ଅଗ୍ରଗତି, ବିଭିନ୍ନ ସଦ୍‌ଭାବନା, ଯାନ୍ତ୍ରିକ, ବୈଦ୍ୟୁତିକ ଓ ଚୁମ୍ବକ ଶକ୍ତିର ଉପଯୋଗରେ ନାନାବିଧ ଆବିଷ୍କାର ନିମ୍ନ ମାନସ ବିକାଶ-ଦ୍ୱାରା ସମ୍ଭବ ହୋଇଛି । ଉଚ୍ଚ ମାନସ ଶକ୍ତିର ଉପଯୋଗ ବୈଜ୍ଞାନିକମାନେ ଏ ପର୍ଯ୍ୟନ୍ତ କରିପାରି ନାହାନ୍ତି । କାଳକ୍ରମେ ସେମାନେ ଉଚ୍ଚ ମାନସ ଓ ତଦୁଚ୍ଚ ଶକ୍ତି ଗୁଡ଼ିକର ସନ୍ଧାନ ପାଇବେ ଓ ତାହାର ଉପଯୋଗ କରିବେ । କିନ୍ତୁ ତାହା କରିବା ପୂର୍ବରୁ ସେମାନଙ୍କୁ ସେସବୁ ଶକ୍ତିର ଅଧିକାରୀ ହେବାକୁ ଆଧ୍ୟାତ୍ମିକ ସାଧନା କରିବାକୁ ହେବ ।

**୧୪ । ଆଗ୍ରହର ସହିତ ଶାନ୍ତି କାମନା କର । କିନ୍ତୁ ତୁମର କାମ୍ୟ ଶାନ୍ତି ଏପରି ସ୍ଥିର ନିଶ୍ଚିତ ହେବା ଦରକାର ଯାହାକି କୌଣସି ଘାତ ପ୍ରତିଘାତରେ ବିଚଳିତ ହେବ ନାହିଁ । ସ୍ଥିର ଜଳରାଶିରେ ପଦ୍ମ ବୃଦ୍ଧି ଲାଭ କଲା ପରି ତୁମର ଆତ୍ମା ଅବିଚଳିତ ଶାନ୍ତିରେ ବିକଶିତ ହେବ ।**

ମନୁଷ୍ୟର ପ୍ରଥମ ଅବସ୍ଥାରେ ଜୀବନର ସଂଗ୍ରାମ ଆବଶ୍ୟକ ଥିଲା । ସେହି ସଂଗ୍ରାମ ଜରିଆରେ ମାନବ ଜାତି ଉନ୍ନତ ହୋଇ ପାରିଛି । ପାଶବିକ ଜୀବନ ଯାପନ ପାଇଁ ସଂଗ୍ରାମ ଆବଶ୍ୟକ, ସ୍ୱାର୍ଥପରତା ଆବଶ୍ୟକ । ସେପରି ଜୀବନରୁ ଯାହା ଶିକ୍ଷା କରିପାଏ ତାହା ଆଧ୍ୟାତ୍ମିକ ଜୀବନ ପ୍ରତି ପ୍ରେରଣା ଦିଏ । ପାଶବିକ ସୁଖ ପ୍ରତି ବିତୃଷ୍ଣା ଆସେ ଓ ଆଧ୍ୟାତ୍ମିକ ଆନନ୍ଦ ଓ ଶାନ୍ତିପାଇଁ ତୃଷ୍ଣା ହୁଏ । କିନ୍ତୁ ଜୀବନ ସଂଗ୍ରାମରତ ଥିଲେ ସେ ଆନନ୍ଦ ଓ ଶାନ୍ତି ମିଳେ ନାହିଁ ।

ସାଧକ ଶାନ୍ତି କାମନା କରିବା ଉଚିତ । ସ୍ୱାର୍ଥ ସଂପୂର୍ଣ୍ଣ ରୂପେ ତ୍ୟାଗ କରିପାରିଲେ ସାଧକ ଏପରି ଶାନ୍ତି ପ୍ରାପ୍ତ ହେବ ଯାହାକି ସମସ୍ତ ଘାତ ପ୍ରତିଘାତରେ ଅତୁଟ ରହିବ । ସମସ୍ତ ନିମ୍ନ ପ୍ରବୃତ୍ତି ସ୍ୱାର୍ଥ ପ୍ରଣୋଦିତ । ସେ ସବୁ ତ୍ୟାଗ କରି ଆଧ୍ୟାତ୍ମିକ ସାଧନାରେ ପ୍ରବୃତ୍ତ ହେଲେ ଶାନ୍ତି ଓ ଶକ୍ତି ପ୍ରାପ୍ତ ହେବ ଓ ତାହାଦ୍ୱାରା ଜନ କଲ୍ୟାଣକର କାର୍ଯ୍ୟ କରିହେବ । ସେପରି କାର୍ଯ୍ୟରେ ସ୍ୱାର୍ଥ ନିହିତ ନ ଥିବାରୁ ଫଳ ପ୍ରାପ୍ତିର କାମନା ନ ଥିବ । ତାହା କର୍ମବନ୍ଧନ ସୃଷ୍ଟି କରିବ ନାହିଁ । ସ୍ଥିର ଜଳରାଶିରେ ପଦ୍ମ ବୃଦ୍ଧି ଲାଭ କଲା ପରି ସାଧକର ଆତ୍ମା ଅବିଚଳିତ ଶାନ୍ତିରେ ବିକଶିତ ହେବ ।

ନିଃସ୍ୱାର୍ଥ ଜନ କଲ୍ୟାଣ କରିବାର ସୁଯୋଗ ସମସ୍ତଙ୍କୁ ମିଳିଥାଏ । ସାଧାରଣ ଲୋକ ତାହାକୁ ଉପେକ୍ଷା କରନ୍ତି ଓ ନିଜର ସ୍ୱାର୍ଥ ସାଧନରେ ଲିପ୍ତ ରୁହନ୍ତି । କିନ୍ତୁ ସାଧକ ଏହାର ସଦୁପଯୋଗ କରେ, କାରଣ ଠିକ୍ ସେହି ସୁଯୋଗ ଆଉ ଥରେ ଆସିବ ନାହିଁ । ନିଃସ୍ୱାର୍ଥପର ଜନ କଲ୍ୟାଣ କାର୍ଯ୍ୟରେ ଅନେକ ବାଧା ବିଘ୍ନ ଆସେ ଓ ସାଧକ ସେସବୁ ଅତିକ୍ରମ କରିବାକୁ ଚେଷ୍ଟା କରେ; କିନ୍ତୁ କୌଣସି ବାଧା ବିଘ୍ନ ତାହାକୁ ବିଚଳିତ କରେ ନାହିଁ । କାରଣ ସେ କାରକ ମାତ୍ର, କର୍ତ୍ତା ନୁହେଁ ।

**୨୫-୨୭ । ଅଧିପତି ହେବାର କାମନା କର । କିନ୍ତୁ ଅଧିକୃତ ଗୁଣ କେବଳ ଶୁଦ୍ଧ ଆତ୍ମାର ହେବା ଉଚିତ ଓ ସମସ୍ତ ଆତ୍ମାର ସମାନ ଭାବରେ ହେବା ଆବଶ୍ୟକ, ଯାହାଦ୍ୱାରା ତାହା ସମଷ୍ଟିର ଗୁଣ ହେବ । ଯେଉଁ ସମଷ୍ଟିପାଇଁ ତୁମେ ଶୁଦ୍ଧ ଆତ୍ମାର ଗୁଣ କାମନା କରିବ ତାହା ଓ ତୁମେ ଅଭିନ୍ନ ଏକ ।**

ସାଧକ ଯେଉଁ ଆଧ୍ୟାତ୍ମିକ ଗୁଣ କାମନା କରିବ ତାହା ମାନବ କଲ୍ୟାଣକାରୀ ହେବା ଆବଶ୍ୟକ । ଏପରି ଗୁଣର କାମନା ନିଃସ୍ୱାର୍ଥପର ହୋଇଥିବାରୁ ସେଥିରେ କର୍ମ ବନ୍ଧନ ହୁଏ ନାହିଁ । ତାହାର ସୁଫଳ ମାନବ ସମାଜ ପ୍ରାପ୍ତ ହୁଏ ଓ ସାଧକ ଆଧ୍ୟାତ୍ମିକ ବିକାଶ ପଥରେ ଅଗ୍ରସର ହୁଏ । ଆଧ୍ୟାତ୍ମିକ ପଥରେ ଅଗ୍ରସର ହେବା ଦ୍ୱାରା ତାହାର କର୍ମ ବନ୍ଧନ କ୍ରମଶଃ ଲୁପ୍ତ ହୁଏ ଓ ସେ ବାରମ୍ବାର ଜନ୍ମ ମୃତ୍ୟୁକୁ ଅତିକ୍ରମ କରିଯାଏ ।

**ଅଷ୍ଟମ ଅଧ୍ୟାୟ—୧୭ଶ ରୁ ୧୯ଶ ଉକ୍ତି**

**୧୭। ପଥ ଅନ୍ୱେଷଣ କର । ଆତ୍ମ ସମୀକ୍ଷା କରି ଦେଖ ତୁମେ ପଥ କାମନା କରୁଛ କିମ୍ବା ନିଜର ପ୍ରଗତି କାମନା କରୁଛ । ତୁମକୁ ସାବଧାନ କରି ଦିଆଯାଉଛି । ପଥ କାମନା ପଥପାଇଁ ହେବା ଉଚିତ, ତୁମର ପ୍ରଗତି ପାଇଁ ନୁହେଁ ।**

ଆଧ୍ୟାତ୍ମିକ ପଥ ଅନେକ । ସେଥିରୁ ସାଧକ ପାଇଁ ଯାହା ଉପଯୁକ୍ତ ସେ ତାହା ଗ୍ରହଣ କରିବ । କିନ୍ତୁ ଏଠାରେ ସାଧକକୁ ସାବଧାନ କରି ଦିଆଯାଉଛି ଯେ ପଥରେ ପ୍ରବେଶ କରିବା ପୂର୍ବରୁ ସେ ଆତ୍ମ ସମୀକ୍ଷା କରି ଦେଖୁ ତାହାର ଉଦ୍ଦେଶ୍ୟ କଅଣ—ସେ ନିଜର ପ୍ରଗତି ପାଇଁ ପଥ ଗ୍ରହଣ କରୁଛି କିମ୍ବା ସାମୂହିକ ଜନକଲ୍ୟାଣ ପାଇଁ ପଥ ଗ୍ରହଣ କରୁଛି । ସାମୂହିକ ଜନ କଲ୍ୟାଣ ସାଧକର ଉଦ୍ଦେଶ୍ୟ ହେବା ଉଚିତ, ନିଜର ସ୍ୱାର୍ଥ ନୁହେଁ ।

ମହାତ୍ମା ହିଲାରିଅନ୍ କହିଛନ୍ତି—

**ଏହି ଉକ୍ତି ପୁସ୍ତକର ଦ୍ୱିତୀୟ ଭାଗର ୧୭ଶ ଉକ୍ତିର ଅନୁରୂପ ବହୁ କାଳର ସଂଗ୍ରାମ ପରେ, ଅନେକ କ୍ଷେତ୍ରରେ ବିଜୟ ଲାଭ ପରେ, ସାଧକ ଯେତେବେଳେ ଶେଷ ସଂଗ୍ରାମରେ ବିଜୟଲାଭ କରେ ଓ ଅନ୍ତିମ ଗୂଢ଼ ତତ୍ତ୍ୱ ଜାଣିବାକୁ ଚାହେଁ, ସେତେବେଳେ ସେ ପରବର୍ତ୍ତୀ ପଥ ପାଇଁ ପ୍ରସ୍ତୁତ ଥାଏ ।**

ଦ୍ୱିତୀୟ ଭାଗର ୧୭ଶ ଉକ୍ତିରେ କୁହାଯାଇଛି ଯେ ଗଭୀରତମ ଏକ ତତ୍ତ୍ୱର ସନ୍ଧାନ କର । ସେଥିରେ ଅନ୍ତିମ ଗୂଢ଼ ତତ୍ତ୍ୱ ପାଇଁ କାଳ କାଳ ଧରି ରହିଛି । ଏହାର ତାତ୍ପର୍ଯ୍ୟ ହେଉଛି ଯେ ଆଧ୍ୟାତ୍ମିକ ପ୍ରଗତିରେ ପଥ ପରେ ପଥ ଅଛି । ସାଧକ ପ୍ରଥମେ ଆତ୍ମାର ସନ୍ଧାନ କରେ । ପରେ Monadର ସନ୍ଧାନ କରେ । ସେତିକରେ ତାହାର ସାଧନାର ସମାପ୍ତି ହୁଏ ନାହିଁ । ତାହାକୁ ପରବର୍ତ୍ତୀ ପଥ ଅନୁସରଣ କରି ଉଚ୍ଚତର ସତ୍ତ୍ୱର ସନ୍ଧାନ

କାଟିବାକୁ ହୁଏ । ଏଥିରେ ସାଧକ କୌଣସି କ୍ଳାନ୍ତ ଅନୁଭବ କରେ ନାହିଁ । କ୍ଳାନ୍ତ କେବଳ ସ୍ଥୂଳ ଶରୀରର । ଉଚ୍ଚତର ଶରୀରମାନଙ୍କରେ କ୍ଳାନ୍ତ ନ ଥାଏ ।

ମହାତ୍ମା ହିଲାରିଅନ୍ ପୁଣି କହିଛନ୍ତି—

**ସାଧକ ଯେତେବେଳେ ଏହି ଅନ୍ତିମ ଗୂଢ଼ତତ୍ତ୍ୱ ଶିକ୍ଷା କରିବ ସେତେବେଳେ ତାହାପାଇଁ ନୂତନ ପଥର ରହସ୍ୟ ଉଦ୍‌ଘାଟିତ ହୋଇଯିବ—ଯାହାକି ମନୁଷ୍ୟର ସମସ୍ତ ଅନୁଭୂତିର ବହିର୍ଭୂତ, ଯାହାକି ମନୁଷ୍ୟର ଧାରଣା ଓ କଳ୍ପନାର ସୀମା ବହିର୍ଭୂତ । ପ୍ରତ୍ୟେକ ପଥ ଆରମ୍ଭରେ ସାଧକ ସ୍ଥିର ଏବେ ଗଭୀର ଚିନ୍ତା କରି ନିଶ୍ଚିତ ହେବା ଆବଶ୍ୟକ ଯେ ତାହାର ସାଧନା ପଥ ପାଇଁ ପ୍ରଥମ ସ୍ଥାନ ମାର୍ଗର, ପର ସ୍ଥାନ ଜୀବନର ।**

କ୍ରମ ବିକାଶ ପଥରେ ମନୁଷ୍ୟ ଯେତେବେଳେ ଅରହତ୍ ସ୍ଥାନ ଲାଭ କରେ ଓ ତତ୍ପର ପରୀକ୍ଷାପାଇଁ ପ୍ରସ୍ତୁତ ହୁଏ ତାହାପାଇଁ ସାତଟି ପଥ ଉନ୍ମୁକ୍ତ ଥାଏ । ସେଥିରୁ ଗୋଟିଏ ପଥ ତାହାକୁ ଗ୍ରହଣ କରିବାକୁ ହୁଏ । ସାଧକ ଯେଉଁ ପଥ ଗ୍ରହଣ କରିବ ତାହା କେବଳ ପଥ ପାଇଁ । ଏହି ମନୋନୟନ Monad କରେ । କାରଣ, ଏ ପଥ ଗୁଡ଼ିକ ମନୁଷ୍ୟର ସମସ୍ତ ଅନୁଭୂତି, ଧାରଣା ଓ କଳ୍ପନାର ବହିର୍ଭୂତ ।

ଏହି ମନୋନୟନ ସ୍ଥାନରେ ପହଞ୍ଚିବା ପୂର୍ବରୁ ନିମ୍ନ ଅହଂଭାବର ବିନାଶ ଘଟିଥାଏ । ନିଃସ୍ୱାର୍ଥପର ଜନକଲ୍ୟାଣ କାର୍ଯ୍ୟଦ୍ୱାରା ଏହା ସମ୍ଭବ ହୁଏ । ଯେତେ ଉଚ୍ଚ ଓ ସୂକ୍ଷ୍ମ ସ୍ତରରେ ହେଲେ ମଧ୍ୟ ସାମାନ୍ୟ ସ୍ୱାର୍ଥପରତା ମନୋନୟନ ସ୍ତରରେ ପହଞ୍ଚିବାରେ ପ୍ରତିବନ୍ଧକ ହୁଏ । ଚେତନା ଉପଯୁକ୍ତ ସ୍ତରରେ ପହଞ୍ଚିବା ପରେ Monad ଏପରି ପଥ ମନୋନୟନ କରେ ଯେଉଁଥିରେ ସେ ଉପଯୋଗୀ କାର୍ଯ୍ୟ କରିପାରିବ କିମ୍ବା ଯେଉଁଥିରେ କର୍ମୀର ଅଭାବ ଥିବ ।

**୧୮ । ନିଜର ନିଭୃତ ଅନ୍ତରରେ ପଥ ସନ୍ଧାନ କର ।**

**୧୯ । ନିଜର ବାହାରେ ସାହସର ସହିତ ପଥ ସନ୍ଧାନ କର ।**

ନିଭୃତ ଅନ୍ତରରେ ଆତ୍ମାର ଏକ କ୍ଷୁଦ୍ର ଅଂଶ ଥାଏ ଯାହାକି ନିର୍ମଳ ଓ ଶୁଦ୍ଧ ଓ Monad ଜରିଆରେ ପରମାତ୍ମାଙ୍କ ସହିତ ସଂଯୁକ୍ତ । ସାଧକର ସମସ୍ତ ଉଚ୍ଚ ଓ ମହତ୍ ଚିନ୍ତା ଏହି ଆତ୍ମା ସହିତ ସଂଯୁକ୍ତ । ଏହି ପ୍ରକାର ଚିନ୍ତା ଦ୍ୱାରା ସାଧକ ଆଧ୍ୟାତ୍ମିକ ପଥର ସନ୍ଧାନ ପାଇବ ।

କିନ୍ତୁ ସାଧକ ସ୍ଥୂଳ ଦେହ, କାମ ଓ ନିମ୍ନମାନସରେ ଆବୃତ୍ତ ଥାଇ କର୍ମ କରି ଅନୁଭୂତି ପ୍ରାପ୍ତ ହେବା ଆବଶ୍ୟକ । ଏହି ଆବରଣଗୁଡ଼ିକୁ ପରିହାର କରି ହେବ ନାହିଁ । ଅନୁଭୂତି ଲାଭ ପାଇଁ ସ୍ଥୂଳ ସଂସାରରେ ରହି ସାହସର ସହିତ ସଂସାରର ସମୀକ୍ଷା କରିବାକୁ ହେବ ।

ଆତ୍ମା ନିର୍ମଳ ଓ ଶୁଦ୍ଧ ହେଲେ ମଧ୍ୟ ଅସ୍ପଷ୍ଟ ଅବସ୍ଥାରେ ଥାଏ । ଚେତନା ସ୍ପଷ୍ଟ ଓ ସମ୍ୟକ୍ କରିବାକୁ ଆତ୍ମାର ଏକ କ୍ଷୁଦ୍ର ଅଂଶ ମାନବ ଶରୀର ଧାରଣ କରି କର୍ମ ଜରିଆରେ ଉଚ୍ଚାଙ୍ଗ ଅନୁଭୂତି ଲାଭ କରେ । ଆତ୍ମାର ଚେତନା ସମ୍ପୂର୍ଣ୍ଣ ବିକଶିତ ହେବାକୁ ଏହା ବାରମ୍ବାର ହୁଏ । କ୍ରମ ବିକାଶରେ ସମସ୍ତ ଉଚ୍ଚାଙ୍ଗ ଅନୁଭୂତି ପ୍ରାପ୍ତ ହେଲେ ମଧ୍ୟ କର୍ମ ବନ୍ଧନ ଶେଷ ହେବା ପର୍ଯ୍ୟନ୍ତ ଆତ୍ମା ସ୍ଥୂଳ ଶରୀରକୁ ଜନକଲ୍ୟାଣ କାର୍ଯ୍ୟରେ ବ୍ୟବହାର କରେ ଓ ତତ୍ପରେ ତାହାର ମାନବ ଶରୀର ଧାରଣ କରିବାର ଆବଶ୍ୟକତା ନ ଥାଏ । ସେ Monad ସହିତ ଏକ ହେବାର ପଥ ଅନୁସରଣ କରେ ।

## ନବମ ଅଧ୍ୟାୟ—୨୦ଶ ଉକ୍ତି

**୨୦ । ଲକ୍ଷ୍ୟରେ ପହୁଞ୍ଚିବା ପାଇଁ କୌଣସି ଗୋଟିଏ ପଥର ଆଶ୍ରୟ ନିଅନାହିଁ । ଆଭ୍ୟନ୍ତରୀଣ ପ୍ରକୃତି ଅନୁସାରେ ମନୁଷ୍ୟର ଗୋଟିଏ ପଥ ବଳବତ୍ତର ହୁଏ । କିନ୍ତୁ ସର୍ବାଙ୍ଗୀନ ବିକାଶ ପାଇଁ ସବୁ ପଥର ଆବଶ୍ୟକତା ଅଛି । କେବଳ ଭକ୍ତି ଦ୍ୱାରା, କିମ୍ବା ଆଧ୍ୟାତ୍ମିକ ଜ୍ଞାନ ଦ୍ୱାରା, କିମ୍ବା ନିଃସ୍ୱାର୍ଥପର କର୍ମ ଦ୍ୱାରା କିମ୍ବା ଜୀବନର ଗଭୀର ପର୍ଯ୍ୟବେକ୍ଷଣ ଦ୍ୱାରା ଲକ୍ଷ୍ୟରେ ପହୁଞ୍ଚି ହେବ ନାହିଁ । ଜୀବନର ନିଶ୍ରୁଣିରେ ଏସବୁ ଗୋଟିଏ ଗୋଟିଏ ପାବଛ । ସମସ୍ତ ପାବଛକୁ ନେଇ ନିଶ୍ରୁଣି ।**

୧୭ଶ ରୁ ୧୯ଶ ଉକ୍ତି ସମ୍ପର୍କରେ ୨୦ଶ ଉକ୍ତି ମହାପ୍ରଭୁମାନଙ୍କ ଟିପ୍ପଣି । ସାଧକକୁ କୁହାଯାଉଛି ଯେ କୌଣସି ଗୋଟିଏ ପଥକୁ ଆଶ୍ରୟ କରି ଅନ୍ୟ ପଥଗୁଡ଼ିକୁ ଅବହେଳା କରନାହିଁ । ଜୀବନ ନିଶୁଣିର ପ୍ରତ୍ୟେକ ପାବଛ ଅତିକ୍ରମ କରିବା ଆବଶ୍ୟକ । ସର୍ବଗୁଣସମ୍ପନ୍ନ ହେବା ପାଇଁ ଏହା ଦରକାର । ସର୍ବଗୁଣସମ୍ପନ୍ନ ନ ହେଲେ ସାଧକ ସବୁ କ୍ଷେତ୍ରରେ କାର୍ଯ୍ୟ କରିପାରିବ ନାହିଁ ।

ନିଜର ଆଭ୍ୟନ୍ତରୀଣ ପ୍ରକୃତି (temperament) ଅନୁସାରେ ସାଧକର ଗୋଟିଏ ପଥ ବାଛିନିଏ ; କାରଣ ସେ ପଥରେ ସେ ସହଜରେ ପ୍ରଗତି ଲାଭ କରିପାରିବ । କିନ୍ତୁ ଅନ୍ୟ ପଥଗୁଡ଼ିକର ସହାୟତା ନ ଥିଲେ ଗୋଟିଏ ପଥରେ ସାଧକର ପ୍ରଗତି ସୀମିତ ହେବ, ତେଣୁ ଲକ୍ଷ୍ୟରେ ପହୁଞ୍ଚି ହେବ ନାହିଁ । ନିଜର ବାଛିନିଏ ପଥରେ ଉତ୍କୃଷ୍ଟତା ଲାଭ କଲେ ମଧ୍ୟ ଅନ୍ୟ ପଥ ଗୁଡ଼ିକରେ ପାରଦର୍ଶିତା ଲାଭ କରିବା ଆବଶ୍ୟକ । ପ୍ରକୃତିର ସୁସଙ୍ଗତି (harmony) ସମସ୍ତ ପଥକୁ ଆବରଣ କରୁଛି । ସେହି ସୁସଙ୍ଗତି ସହିତ ସହଯୋଗ କରିବାକୁ ହେବ ।

ନିଜର ଆଭ୍ୟନ୍ତରୀଣ ପ୍ରକୃତି ନିର୍ଦ୍ଦେଶିତ ମାର୍ଗ ଅବଲମ୍ବନ କରି ଅନ୍ୟ ମାର୍ଗ ଗୁଡ଼ିକୁ ଅବହେଳା କଲେ ସାଧକ ନିର୍ବାଣ ବା ମୋକ୍ଷ ପର୍ଯ୍ୟନ୍ତ ଗତି କରି ପାରିବ । ସେତିକିରେ ତାହାର ପ୍ରଗତି ବନ୍ଦ ହେବ । ଆତ୍ମାରୁ **monad**କୁ ଯାଇ ପାରିବ ନାହିଁ । ବିଭିନ୍ନ ପଥରେ ଥିବା ସମଗ୍ର ମାନବ ଜାତିକୁ ସେ ଏକ ଦୃଷ୍ଟିରେ ଦେଖିନାହିଁ । ତେଣୁ ପୃଥିବୀ ଗୋଲକ କାଳ ଅନ୍ତେ ତାହାକୁ ଏହା ଶିକ୍ଷା କରିବାକୁ ପୁଣି ଜନ୍ମଗ୍ରହଣ କରିବାକୁ ହେବ । ମହାତ୍ମାମାନଙ୍କ ସ୍ତରକୁ ଯିବାକୁ ହେଲେ ସାଧକ ଆରମ୍ଭରୁ ସବୁ ମାର୍ଗରୁ ଶିକ୍ଷାଲାଭ କରିବା ଆବଶ୍ୟକ ।

**ମନୁଷ୍ୟ ତାହାର ପାପଗୁଡ଼ିକରୁ ମୁକ୍ତିଲାଭ କରିବାରେ ଜୀବନ-ନିଶୁଣିର ଗୋଟିଏ ଗୋଟିଏ ପାବଚ୍ଛ ଅତିକ୍ରମ କରେ । ମନୁଷ୍ୟର ପାପଗୁଡ଼ିକ ଜୀବନ-ନିଶୁଣିର ଆବଶ୍ୟକ ପାବଚ୍ଛ । ପୁଣ୍ୟ ମଧ୍ୟ ଆବଶ୍ୟକ ପାବଚ୍ଛ । ପୁଣ୍ୟ ପାବଚ୍ଛଗୁଡ଼ିକ ଉତ୍ତମ ପରିବେଶ ଓ ଆନନ୍ଦମୟ ଭବିଷ୍ୟତ ସୃଷ୍ଟି କଲେ ମଧ୍ୟ କେବଳ ପୁଣ୍ୟ ପାବଚ୍ଛ ନିରର୍ଥକ ।**

ଚିରନ୍ତନ ଦୈବୀଶକ୍ତି ପ୍ରତ୍ୟେକ ପ୍ରାଣୀଠାରେ ବିଭିନ୍ନ ପ୍ରକାରେ ପ୍ରକାଶ ପାଏ । ନିମ୍ନ ସ୍ତରର ପ୍ରାଣୀପାଇଁ ଯାହା ପୁଣ୍ୟ ଉଚ୍ଚ ସ୍ତରର ପ୍ରାଣୀ-ପାଇଁ ତାହା ପାପ । ଅନ୍ୟ ପ୍ରାଣୀକୁ ମାରି ଖାଇବା ମାଂସାଶୀ ଜନ୍ତୁମାନଙ୍କ ପାଇଁ ପାପ ନୁହେଁ । ତାହାଙ୍କ ପାଇଁ ତାହା ସ୍ୱଧର୍ମ । ମନୁଷ୍ୟ ସ୍ତରରେ ତାହା ପାପ ।

ବିଭିନ୍ନ ସ୍ତରର ମନୁଷ୍ୟମାନଙ୍କ କ୍ଷେତ୍ରରେ ମଧ୍ୟ ଏହି ବିଧିର ପ୍ରଯୁଜ୍ୟ । ଆଦିମ ମନୁଷ୍ୟ ବଞ୍ଚି ରହିବା ପାଇଁ, ନିଜର ସୁରକ୍ଷା ପାଇଁ, ଅତ୍ୟନ୍ତ ସ୍ୱାର୍ଥପର ଓ କ୍ରୂର ହେବା ଆବଶ୍ୟକ । କ୍ରମ ବିକାଶ ପଥରେ ସେ ଯେତେବେଳେ ସଭ୍ୟ ମାନବ ହୁଏ, ତାହାର ସ୍ୱାର୍ଥପରତା ଓ ନିଷ୍ଠୁରତା ବହୁ ପରିମାଣରେ ଦୂର ହୋଇଯାଏ । କର୍ମଫଳରୁ ସେ ଶିକ୍ଷା ଲାଭ କରେ ଯେ ସ୍ୱାର୍ଥପରତା, କାମ, କ୍ରୋଧ, ନିଷ୍ଠୁରତା ପ୍ରଭୃତି ଅନେକ କଷ୍ଟ ଦିଏ ଓ ଭଲ ପାଇବା, ଦୟା କରିବା ଓ ଅନ୍ୟର ଉପକାର କରିବାରେ ଅନେକ ଆନନ୍ଦ ମିଳେ । ତେଣୁ ଊର୍ଦ୍ଧ୍ୱତମ ବିଶ୍ୱ ଚେତନା ଦୃଷ୍ଟିରେ

ପାପ ଓ ପୁଣ୍ୟ ଉଭୟ ଜୀବନ-ନିଶୁଣିର ବିଭିନ୍ନ ପାବଚ୍ଛ । ପ୍ରତ୍ୟେକ ପାପ ନିମ୍ନ ସ୍ତରରେ ଏକ ପାବଚ୍ଛ । ନିମ୍ନ ବିକାଶରେ ସେହି ପାପ ତାହାର ବିପରୀତ ପୁଣ୍ୟରେ ପରିଣତ ହୁଏ । ସେହି ପୁଣ୍ୟ ମଧ୍ୟ ଏକ ପାବଚ୍ଛ ।

**ଯେଉଁ ମନୁଷ୍ୟ ଆଧ୍ୟାତ୍ମିକ ପଥରେ ପ୍ରବେଶ କରିବାକୁ ଇଚ୍ଛୁକ, ସେ ତାହାର ସ୍ୱଭାବ ଓ ଗୁଣଗୁଡ଼ିକୁ ବିଜ୍ଞତାର ସହିତ ଉପଯୋଗ କରିବା ଉଚିତ ।**

ମନୁଷ୍ୟ ବାସ୍ତବରେ Monad, ଯାହାକି ଦିବ୍ୟ ଈଶ୍ୱରୀୟ ଶିଖାର ଏକ ସ୍ଫୁଲିଙ୍ଗ । ତେଣୁ ସେ ପରମେଶ୍ୱରଙ୍କ ଏକ ଅଂଶ ଓ ପରମେଶ୍ୱରଙ୍କ ସମସ୍ତ ଶକ୍ତି ତାହାଠାରେ ସୁପ୍ତ ଅବସ୍ଥାରେ ଅଛି । Monadର ତ୍ରିବିଧ ପ୍ରକାଶ ଆତ୍ମା, ବୁଦ୍ଧି ଓ ମାନସ ସ୍ତରରେ ହୁଏ । ଏହି ସୁପ୍ତ ଶକ୍ତିକୁ ଜାଗ୍ରତ କରି ସେ ନିର୍ବାଣ ସ୍ତରକୁ ଯିବାକୁ ଇଚ୍ଛା କରେ । ସେଥିପାଇଁ ସେ ନିଜର ସ୍ୱଭାବ ଓ ଗୁଣଗୁଡ଼ିକୁ ବିଜ୍ଞତାର ସହିତ ଉପଯୋଗ କରିବା ଆବଶ୍ୟକ । ନିଜର ସ୍ୱଭାବ ଓ ଗୁଣଗୁଡ଼ିକ ଉଚ୍ଚାଭିମୁଖୀ ହେଲେ କାର୍ଯ୍ୟ ଅନୁରୂପ ହେବ । ଏହାହିଁ ଆଧ୍ୟାତ୍ମିକ ପଥରେ ପ୍ରବେଶ କରିବାର ଉପାୟ । ଏହା କିପରି କରିବାକୁ ହେବ ତାହା At the Feet of the Master ପୁସ୍ତକରେ ଦିଆଯାଇଛି ।

**ପ୍ରତ୍ୟେକ ମନୁଷ୍ୟ ତାହାପାଇଁ ସମ୍ପୂର୍ଣ୍ଣ ପଥ, ସତ୍ୟ ଓ ଜୀବନ । କିନ୍ତୁ ସେ ଏହା, ଯେତେବେଳେ ସେ ତାହାର ଆତ୍ମା, ବୁଦ୍ଧି ଓ ଉଚ୍ଚ ମାନସରେ ଦୃଢ଼ ସ୍ଥିତି ଲାଭ କରି ଜାଗ୍ରତ ଇଚ୍ଛାଶକ୍ତିଦ୍ୱାରା ଉପଲବ୍ଧି କରିଛି ଯେ ସେ ଆତ୍ମା, ବୁଦ୍ଧି ଓ ଉଚ୍ଚ ମାନସ ନୁହେଁ । ଆତ୍ମା, ବୁଦ୍ଧି ଓ ଉଚ୍ଚ ମାନସିକ ଶରୀର ସେ ବହୁ କଷ୍ଟରେ ଉନ୍ନତ କରିଛି କେବଳ ନିଜର ବ୍ୟବହାର ପାଇଁ—ଯାହାଦ୍ୱାରା ସେ କ୍ରମଶଃ ଆତ୍ମା-ବୁଦ୍ଧି-ଉଚ୍ଚମାନସ ଅତିକ୍ରମ କରି ଉଚ୍ଚତର ଜୀବନରେ ପହୁଞ୍ଚି ପାରିବ । ଯେତେବେଳେ ସେ ଜାଣିବ ଯେ ଏହି ଉଚ୍ଚତର ଜୀବନ ପାଇଁ ସେ ତାହାର ଜଟିଳ ପୃଥକ ଜୀବନ ଧାରଣ କରିଛି, ସେତେବେଳେ ସେ ମାର୍ଗରେ ପ୍ରଗତି କରିବ ।**

ଆତ୍ମ-ବୁଦ୍ଧି-ଉଚ୍ଚମାନସକୁ individuality କୁହାଯାଏ ଓ ନିମ୍ନମାନସ-କାମ-ଲିଙ୍ଗ-ସ୍ଥୂଳ ଶରୀରକୁ personality କୁହାଯାଏ । Monad individualityକୁ ସୃଷ୍ଟି କରିଥାଏ । Individuality personalityକୁ ସୃଷ୍ଟି କରିଥାଏ । Monadର କାର୍ଯ୍ୟ ପାଇଁ individuality ଓ personality ସୃଷ୍ଟି ହୋଇଥାଏ । Personalityକୁ ଆସି ମନୁଷ୍ୟ ନିଜର ଆଧ୍ୟାତ୍ମିକ ଉତ୍ସକୁ ଭୁଲିଯାଏ ଓ personalityକୁ ନିଜେ ବୋଲି ମନେକରେ । ଏହି ଭ୍ରାନ୍ତି ତାହାକୁ personalityର ସ୍ୱାର୍ଥ ପାଇଁ କାର୍ଯ୍ୟ କରାଏ ଓ ସେଥିରୁ ସେ ଉକ୍ତ କର୍ମଫଳ ଭୋଗି ଯାହା ଶିକ୍ଷା କରେ ତାହା individualityକୁ ଉଚ୍ଚମାନସ ସ୍ତରରେ ଥିବା କାରଣ ଶରୀର (Causal body) ଜରିଆରେ ପ୍ରଦାନ କରେ । ଜନ୍ମ ଜନ୍ମାନ୍ତର ଧରି personality ଜରିଆରେ ସମସ୍ତ ନିମ୍ନ ସ୍ତରର ଅନୁଭୂତି ଓ ଶିକ୍ଷା ଲାଭ ଶେଷ ହେଲେ ମନୁଷ୍ୟ ପୃଥିବୀରେ ଜନ୍ମ ମୃତ୍ୟୁର ଆବର୍ତ୍ତନରୁ ମୁକ୍ତ ହୁଏ । ସେ individualityରେ ସ୍ଥିତିଲାଭ କରେ । ତାହାର ବୁଦ୍ଧି ଜାଗ୍ରତ ହୁଏ ଓ ସେ ଆତ୍ମା ସହିତ ଏକ ହୋଇଯାଏ । ସେତେବେଳେ କାରଣ ଶରୀରର ଆଉ ଆବଶ୍ୟକତା ନ ଥିବାରୁ ତାହା ଲୋପ ହୁଏ । ମନୁଷ୍ୟର ଆତ୍ମିକ ଚେତନା ନିଜର ଇଚ୍ଛାଶକ୍ତିଦ୍ୱାରା ଉପଲବ୍ଧି କରେ ଯେ ସେ individuality ମଧ୍ୟ ନୁହେଁ । ବହୁ କଷ୍ଟରେ ଯେଉଁ individualityରେ ସେ ସ୍ଥିତି ଲାଭ କରିଥିଲା ତାହା କେବଳ monad ସ୍ତରକୁ ଯିବାର ପଥ ମାତ୍ର । ସେ ଜାଣିବ ଯେ ସମସ୍ତ ପୃଥକ ଶରୀର ଓ ଚେତନା କେବଳ monad ସ୍ତର ପାଇଁଉଦ୍ଦିଷ୍ଟ । ସେତେବେଳେ ସେ ଉଚ୍ଚତର ଜୀବନ ମାର୍ଗରେ ପ୍ରଗତି କରିବ ।

**ପଥର ସନ୍ଧାନ ପାଇଁ ନିଗୂଢ଼ ଐଶ୍ୱର୍ଯ୍ୟସମ୍ପନ୍ନ ଗଭୀର ଅନ୍ତରକୁ ପ୍ରବେଶ କର । ସମସ୍ତ ଅନୁଭୂତିକୁ ପରୀକ୍ଷା କରି ଦେଖ, ଇନ୍ଦ୍ରିୟଗୁଡ଼ିକର ଉପଯୋଗ କରି ଆତ୍ମ-ବୁଦ୍ଧି-ମାନସର ବୃଦ୍ଧି ଓ ତାତ୍ପର୍ଯ୍ୟ ବୁଝ ଏବଂ ତୁମପରି ଅନ୍ୟ ଈଶ୍ୱରୀୟ ଶିଖାର ସ୍ଫୁଲିଙ୍ଗ ଗୁଡ଼ିକ, ଯେଉଁମାନେ କି ତୁମପରି ସାଧନାରତ ଓ ତୁମର ସ୍ୱଜାତୀୟ, ସେମାନଙ୍କ ସୌନ୍ଦର୍ଯ୍ୟ ଓ ଅପ୍ରକାଶିତ ଗୁଣଗୁଡ଼ିକ ବୁଝ । ପଥର ସନ୍ଧାନ ପାଇଁ ନିଜ ସ୍ଥିତିର ନିୟମାବଳୀ, ପ୍ରକୃତିର ନିୟମାବଳୀ**

**ଓ ଅତିପ୍ରକୃତର (Supernatural) ନିୟମାବଳୀର ଅନୁଧ୍ୟାନ କର । ନିଜ ଅନ୍ତରରେ ଥିବା କ୍ଷୀଣ ଆଲୋକ ଦେଉଥିବା ଜ୍ୱଳନ୍ତ ନକ୍ଷତ୍ରକୁ ପ୍ରଣିପାତ କର । ଏହିପରି ତୁମେ ଅନୁଧ୍ୟାନ ଓ ପୂଜା କରୁଥିଲେ କ୍ରମଶଃ ସେହି ନକ୍ଷତ୍ରର ଆଲୋକ ତୀବ୍ରତର ହେବ । ଯେତେବେଳେ ତୁମେ ଜାଣିବ ଯେ ତୁମେ ପଥର ସନ୍ଧାନ ପାଇଛ । ତୁମେ ଯେତେବେଳେ ପଥର ଶେଷ ଭାଗରେ ପହଞ୍ଚିବ, ତୁମେ ଦେଖିବ ଯେ ସେ ଆଲୋକ ଚିରନ୍ତନ ଆଲୋକରେ ପରିଣତ ହୋଇଛି ।**

ଏହି ଉକ୍ତିରେ ପଥ ସନ୍ଧାନରେ ତିନୋଟି ପର୍ଯ୍ୟାୟ ଦିଆଯାଇଛି । ପ୍ରଥମ ପର୍ଯ୍ୟାୟରେ ସ୍ଥୂଳ, କାମ ଓ ନିମ୍ନ ମାନସରେ କାର୍ଯ୍ୟ କରୁଥିବା ପ୍ରକୃତିର ନିୟମାବଳୀକୁ ଅନୁଧ୍ୟାନ କରିବାକୁ କୁହାଯାଉଛି । ଅର୍ଥାତ୍ ଯେଉଁସବୁ ସ୍ତରରେ personality ଜଡ଼ିତ ସେସବୁ ସ୍ତରର ପ୍ରାକୃତିକ ନିୟମାବଳୀକୁ ଅନୁଧ୍ୟାନ କରିବାକୁ କୁହାଯାଉଛି । ଏହାର ଉପର ପର୍ଯ୍ୟାୟରେ ଉଚ୍ଚ ମାନସ ଓ ବୁଦ୍ଧି ସ୍ତରରେ ଅତିପ୍ରାକୃତିକ ନିୟମାବଳୀର ଅନୁଧ୍ୟାନ କରିବାକୁ କୁହାଯାଉଛି । ଏହାର ଉପର ପର୍ଯ୍ୟାୟରେ ଆତ୍ମା ସ୍ତର ବା ନିର୍ବାଣ ଅଛି । ଏହି ଆତ୍ମା ସ୍ତର ମନୁଷ୍ୟର ପ୍ରକୃତ ସ୍ଥିତି ଓ ଚେତନାର ସ୍ତର । ଏହାର ଏକ ଅଂଶ ସ୍ଥୂଳ ମନୁଷ୍ୟର ଅନ୍ତରତମ ପ୍ରଦେଶରେ ଏକ କ୍ଷୀଣ ଆଲୋକଯୁକ୍ତ ନକ୍ଷତ୍ର ରୂପେ ପ୍ରତିଭାତ ହୁଏ । ଏହାର ଅନୁଧ୍ୟାନ ଓ ପୂଜା କରୁଥିଲେ ସେହି ନକ୍ଷତ୍ରରୂପୀ ଆତ୍ମାର ବିକାଶ ହେବ ଓ ପଥର ସନ୍ଧାନ ମିଳିବ । ପଥର ଶେଷରେ ଆତ୍ମା ପୂର୍ଣ୍ଣ ବିକଶିତ ହୋଇ ଚିରନ୍ତନ ଆଲୋକ ରୂପେ ପ୍ରତିଭାତ ହେବ । ନିର୍ବାଣରେ ଆତ୍ମାର ପୂର୍ଣ୍ଣ ବିକାଶ ହୁଏ । ସେ ସ୍ତରକୁ କେବଳ ସମାଧି ଅବସ୍ଥାରେ ଯାଇହୁଏ । ସାଧକ ନିଜର ଅନୁଧ୍ୟାନ, ନିଷ୍ଠା ଓ ସତତ ଚେଷ୍ଟା ବଳରେ ଉପରୋକ୍ତ ପର୍ଯ୍ୟାୟକ୍ରମେ ନିର୍ବାଣ ସ୍ତରରେ ପହଞ୍ଚିପାରିବ ।

## ଦଶମ ଅଧ୍ୟାୟ—୨୦ଶ ଉକ୍ତି ଆଧାରିତ ମନ୍ତବ୍ୟ

ମହାତ୍ମା ହିଲାରିଅନ୍ କହିଛନ୍ତି—

**ମାର୍ଗର ସନ୍ଧାନରେ ପ୍ରତ୍ୟେକ ଅନୁଭୂତିକୁ ପରୀକ୍ଷା କର। ଅନୁଭୂତି ପ୍ରାପ୍ତ ହେବାପାଇଁ ଦୁଷ୍କର୍ମରେ ପ୍ରବୃତ୍ତ ହୁଅ ନାହିଁ। ଦୁଷ୍କର୍ମର ଲଜ୍ଜା ଓ ବିଭୀଷିକାଠାରୁ ଦୂରରେ ରହି ସମସ୍ତ ପ୍ରକାର ଅନୁଭୂତିକୁ ପର୍ଯ୍ୟବେକ୍ଷଣ କର, ତୁଳନା କର ଓ ପରୀକ୍ଷା କର ଏବଂ ଧୈର୍ଯ୍ୟର ସହିତ, ଆତ୍ମ-ବିଶ୍ୱାସର ସହିତ ଅପେକ୍ଷା କର। ସମୟ ଆସିବ ଯେତେବେଳେ ଇନ୍ଦ୍ରିୟ ସଂପୃକ୍ତ କୌଣସି କାମନା ତୁମକୁ ସ୍ପର୍ଶ କରିପାରିବ ନାହିଁ।**

ଅଜ୍ଞ ମାନବ ଦୁଷ୍କର୍ମରେ ପ୍ରବୃତ୍ତ ହୋଇ କର୍ମଫଳର କଷ୍ଟ ଭୋଗ କରେ ଓ ଅନୁଭୂତି ଲାଭ କରେ। ସେହି ଅନୁଭୂତିରୁ ତାହାର ଶିକ୍ଷା ଲାଭ ହୁଏ। କିନ୍ତୁ ଜ୍ଞାନ ଲାଭ କରିଥିବା ମାନବ ଦୁଷ୍କର୍ମ କଲେ ତାହାର ଜ୍ଞାନ ମୂଲ୍ୟହୀନ ହୁଏ ଓ ସେ ଲଜ୍ଜା ଓ କର୍ମଫଳର କଷ୍ଟ ଭୋଗ କରେ। ତେଣୁ ସାଧକ ଦୁଷ୍କର୍ମଠାରୁ ଦୂରରେ ରହି ସମସ୍ତ ପ୍ରକାର ଅନୁଭୂତିକୁ ପରୀକ୍ଷା କରିବାକୁ କୁହାଯାଇଛି।

କାମନା ବାସନାର ବିଭିନ୍ନ ସ୍ତର ଅଛି। ସ୍ଥୂଳ ଜଗତର ଅତ୍ୟନ୍ତ ଜଘନ୍ୟ ଅସତ୍ କାମନାଠାରୁ ସୂକ୍ଷ୍ମ ଜଗତର ଲୋଭନୀୟ ଆନନ୍ଦପ୍ରଦ ଆକର୍ଷଣ ପର୍ଯ୍ୟନ୍ତ କାମନାର ସୁଦୂର ପ୍ରସାରୀ ପ୍ରଭାବ ରହିଛି। ଶିକ୍ଷାପାଇଁ ଅନୁଭୂତି ଆବଶ୍ୟକ। ସେ ଅନୁଭୂତି ଅନ୍ୟମାନଙ୍କୁ ଦେଖି ଲାଭ କରିହେବ। ନିମ୍ନ ସ୍ତରର ଅନୁଭୂତି ଲାଭ କରିବା ପାଇଁ ସାଧକକୁ ଦୁଷ୍କର୍ମ କରିବା ଆବଶ୍ୟକ ନୁହେଁ। ଉଚ୍ଚ ସ୍ତରର ଅନୁଭୂତି ପାଇଁ ଉଚ୍ଚ ଅଭିଳାଷ ଆବଶ୍ୟକ। ସେ ଅନୁଭୂତି ଦୃଶ୍ୟମାନ୍ ନୁହେଁ। ନିର୍ବାଣ ସ୍ତରକୁ ଗଲେ ଅଭିଳାଷ ବା ଅନୁଭୂତିର ଆବଶ୍ୟକତା ନ ଥାଏ, କାରଣ ସାଧକ ଅଶେଷ ହୋଇସାରିଥାଏ।

ଉଚ୍ଚ ଅଭିଳାଷରେ ଯେଉଁ ସଙ୍କଟ ଅଛି ସାଧକ ତାହାପ୍ରତି ସତର୍କ ଥିବା ଦରକାର । ଉଚ୍ଚ ଅଭିଳାଷ କାମନା ଶ୍ରେଣୀଭୁକ୍ତ । ତେଣୁ ତାହା ସାଧକକୁ ଦୁଷ୍କର୍ମକୁ ଟାଣି ଆଣିବାର ଆଶଙ୍କା ଅଛି । ଏହାର ପ୍ରତିରୋଧ ପାଇଁ ସାଧକକୁ ଦୁଷ୍କର୍ମ ଠାରୁ ଦୂରରେ ରହିବାକୁ ହେବ । ନିଜେ ଦୁଷ୍କର୍ମରେ ସଂପୃକ୍ତ ନ ହୋଇ ସମସ୍ତ ପ୍ରକାର ଅନୁଭୂତିକୁ ପର୍ଯ୍ୟବେକ୍ଷଣ କରିବ, ତୁଳନା କରିବ ଓ ପରୀକ୍ଷା କରିବ । ଏହିପରି ସେ ଆବଶ୍ୟକ ଶିକ୍ଷା ଲାଭ କରିବ । ଏହିପରି ଶିକ୍ଷା ଲାଭ କରିବାକୁ ହେଲେ ସେ ଅନ୍ୟମାନଙ୍କଠାରୁ ନିଜକୁ ପୃଥକ ଚିନ୍ତା କରିବ ନାହିଁ । ନିଜେ ଦୁଷ୍କର୍ମରେ ପ୍ରବୃତ୍ତ ନ ହେଲେ ମଧ୍ୟ ଦୁଷ୍କର୍ମରେ ପ୍ରବୃତ୍ତ ହେଉଥିବା ଲୋକଙ୍କୁ ଘୃଣା କରିବ ନାହିଁ ବା ହୀନ ଦୃଷ୍ଟିରେ ଦେଖିବ ନାହିଁ । ମାନବ ଜାତିର ଗୋଟିଏ ଅଙ୍ଗ ଭାବରେ ତାହାର ସମସ୍ତ ଅନୁଭୂତି ଓ ଶିକ୍ଷା ଲାଭ ହେବ । ଏ ବିଷୟରେ ସତତ ଜାଗ୍ରତ ଥିଲେ ସମୟକ୍ରମେ ଇନ୍ଦ୍ରିୟ ସଂପୃକ୍ତ କୌଣସି କାମନା ସାଧକକୁ ସ୍ପର୍ଶ କରିପାରିବ ନାହିଁ । ସେ ଦୁଷ୍କର୍ମ କରୁଥିବା ଲୋକଙ୍କୁ ସତ୍ ମାର୍ଗକୁ ଆଣିବାରେ ସହାୟକ ହେବ ।

ମହାତ୍ମା ହିଲାରିଅନ୍ କହିଛନ୍ତି—

**କାମନାର ବଶବର୍ତ୍ତୀ ହୋଇ ଅପକର୍ମ କରୁଥିବା ଲୋକଙ୍କୁ ନିନ୍ଦା କର ନାହିଁ । ସେପରି ଲୋକ ପଙ୍କରେ ଗୋଡ଼ ପୂରାଇଛି । ସେ ମାନବ ଜାତିର ଏକ ଅଙ୍ଗ ବିଚାର କରି ତାହାକୁ ସତ୍ ମାର୍ଗକୁ ଆଣିବାକୁ ଚେଷ୍ଟା କର । ସତ ଚରିତ୍ରବାନ୍ ଲୋକ ପାପୀଠାରୁ ଅନେକ ଉଚ୍ଚରେ । ସତ୍ ଲୋକଠାରୁ ଜ୍ଞାନୀ ଆହୁରି ଉଚ୍ଚରେ । ସତ୍ ଲୋକଠାରୁ ଅଶେଷ ସ୍ତରରେ ଥିବା ଲୋକ ଏତେ ଉଚ୍ଚରେ ଯେ ତାହା କଳ୍ପନାତୀତ । କିନ୍ତୁ ସମସ୍ତେ ମାନବ ଜାତିର ଗୋଟିଏ ଗୋଟିଏ ଅଙ୍ଗ । ତେଣୁ ଯେତେ ଉଚ୍ଚ ସ୍ତରରେ ଥିଲେ ମଧ୍ୟ ତୁମେ ମାନବ ଜାତିଠାରୁ ନିଜକୁ ପୃଥକ୍ ମନେ କର ନାହିଁ ।**

ସତ୍ ଲୋକ ଓ ଅସତ୍ ଲୋକ ମଧ୍ୟରେ ବ୍ୟବଧାନ ଖୁବ୍ ବେଶି ନୁହେଁ । ସତ୍ ଲୋକର ଅସତ୍ ପ୍ରବୃତ୍ତିଗୁଡ଼ିକୁ କେବଳ ଦମନ କରାଯାଇଛି । ସେସବୁ ନଷ୍ଟ ହୋଇନାହିଁ । ଜ୍ଞାନୀ ଲୋକ ଉଚ୍ଚ ସ୍ତରରେ ଅଛି, କାରଣ ସେ

ସତ୍ ଓ ଅସତ୍‌ର ପ୍ରକୃତ ତାତ୍ପର୍ଯ୍ୟ ବୁଝିଛି । ଅଶେଷ ଆତ୍ମର ଉଚ୍ଚତର ସ୍ତରରେ ଅଛି, କାରଣ ସେ ସତ୍ ଓ ଅସତ୍‌କୁ ଏକ ସତ୍ତାର ଦୁଇଟି ବିପରୀତ ଗୁଣ ଭାବରେ ବିଚାର କରେ । ଅସତ୍ ଲୋକକୁ ଘୃଣା କରିବା ସାଧକ ଅନ୍ତରରେ ଅସତ୍‌ର ଲୁକ୍‌କାୟିତ ସ୍ଥିତିର ସୂଚନା ଦିଏ । ତାହା ସାଧକକୁ ଅସତ୍ ମାର୍ଗକୁ ଟାଣି ଆଣିପାରେ । ସତ୍ ଓ ଅସତ୍ ଉଭୟର ଆକର୍ଷଣ ଶକ୍ତି ଅଛି । ଅଶେଷ ପ୍ରକୃତିର ନିୟମକୁ ମାନ୍ୟତା ଦିଏ । ସତ୍ ଓ ଅସତ୍ ଉଭୟର ତାତ୍ପର୍ଯ୍ୟ ବୁଝି ସେ ଉଭୟର ଊର୍ଦ୍ଧ୍ୱକୁ ଚାଲିଯାଇଛି ।

ମହାତ୍ମା ହିଲରିଅନ୍ କହିଛନ୍ତି—

**ତୁମେ ଯେତେବେଳେ ମାର୍ଗର ସନ୍ଧାନ ପାଇବ ସେତେ-ବେଳେ ତୁମେ ଆତ୍ମାର ଆଲୋକ ଦେଖିବ ଓ ଜାଣିବ ଯେ କେତେ ବିଶାଳ ଅନ୍ଧକାରରେ ସେ ଆଲୋକ ପ୍ରଜ୍ୱଳିତ । ପ୍ରଥମ ସଂଗ୍ରାମରେ ଜୟ ଲାଭ କରିବା ପର୍ଯ୍ୟନ୍ତ ମାନସ, ହୃଦୟ, ମସ୍ତିଷ୍କ, ସମସ୍ତ ଆଚ୍ଛନ୍ନ ଓ ଅନ୍ଧକାରାବୃତ । ଭୟ କର ନାହିଁ । ସେହି ଆଲୋକରେ ଚକ୍ଷୁ ନିବଦ୍ଧ ରଖ । ତାହା କ୍ରମଶଃ ବୃଦ୍ଧି ଲାଭ କରିବ । କିନ୍ତୁ ସେ ବିଶାଳ ଅନ୍ଧକାର ତୁମକୁ ଅନ୍ୟମାନଙ୍କୁ ବୁଝିବାକୁ ସାହାଯ୍ୟ କରୁ, ଯେଉଁମାନେ ସେ ଆଲୋକ ଦେଖିନାହାନ୍ତି ଓ ଯାହାଙ୍କର ଆତ୍ମା ତିମିରାଚ୍ଛନ୍ନ ନିଃସହାୟ ଅବସ୍ଥାରେ ଅଛି ।**

ପ୍ରଥମ ସଂଗ୍ରାମ ଇନ୍ଦ୍ରିୟମାନଙ୍କ ଆକର୍ଷଣ ବିରୁଦ୍ଧରେ, ନିମ୍ନ ପ୍ରବୃତ୍ତି-ଗୁଡ଼ିକ ବିରୁଦ୍ଧରେ । ନିମ୍ନ ପ୍ରବୃତ୍ତିଗୁଡ଼ିକ ମନୁଷ୍ୟର ଆବେଗ, ମନ, ବୁଦ୍ଧି ପ୍ରଭୃତିକୁ ଅନ୍ଧକାରରେ ଆଚ୍ଛନ୍ନ କରିଥାଏ । ସେଥିରୁ ମୁକ୍ତ ହେଲେ ଆତ୍ମାର ଆଲୋକ ସେହି ବିଶାଳ ଅନ୍ଧକାର ମଧ୍ୟରେ ଦେଖାଯାଏ । ସେଥିରେ ଭୟ କରିବାର କିଛି ନାହିଁ । ସେହି ଆଲୋକରେ ଦୃଷ୍ଟି ନିବଦ୍ଧ ରଖିଲେ ତାହା କ୍ରମଶଃ ବୃଦ୍ଧି ଲାଭ କରିବ; ଅର୍ଥାତ୍ ଆତ୍ମା ବିକଶିତ ହେବ । କିନ୍ତୁ ଯେଉଁ ଅନ୍ଧକାରରେ ସାଧକ ଆଲୋକ ଦର୍ଶନ କରେ ସେହି ଅନ୍ଧକାର ସମଗ୍ର ମାନବ ଜାତିକୁ ଆଚ୍ଛନ୍ନ କରି ନିଃସହାୟ ଅବସ୍ଥାରେ ରଖିଛି । ଏହା ଜାଣି ସାଧକ ସେମାନଙ୍କ ପାଇଁ ଅନୁକମ୍ପା କରେ ଓ ସାହାଯ୍ୟ କରିବାକୁ ଚେଷ୍ଟା କରେ ।

ମହାତ୍ମା ହିଲାରିଅନ୍ କହିଛନ୍ତି—

**ଅସତ୍ ଲୋକଙ୍କୁ ଦୋଷ ଦିଅ ନାହିଁ । ସେମାନଙ୍କ ପ୍ରତି ବିତୃଷ୍ଣା ଭାବ ରଖ ନାହିଁ । ପୃଥିବୀର ଗୁରୁ କର୍ମକୁ କିଞ୍ଚିତ୍ ଲାଘବ କରିବାକୁ ଚେଷ୍ଟା କର । ଯେଉଁ ବରିଷ୍ଠ ବ୍ୟକ୍ତିମାନେ ଅନ୍ଧକାରର ଅସତ୍ ଶକ୍ତିଗୁଡ଼ିକୁ ପ୍ରତିହତ କରୁଛନ୍ତି, ସେମାନଙ୍କୁ ସାହାଯ୍ୟ କର, ଯାହା ଦ୍ୱାରା ଅସତ୍ ବ୍ୟକ୍ତି ଜୟଲାଭ କରିପାରିବ ନାହିଁ ।**

ଅନ୍ଧକାରର ଅସତ୍ ଶକ୍ତିଗୁଡ଼ିକ ହେଉଛି ପାର୍ଥିବ କାମନାଜନିତ ଆକର୍ଷଣ, ଯେଉଁଥିରେ କି ଅଧିକାଂଶ ମାନବ ଜଡ଼ିତ । ପୃଥିବୀର ମାନବ ଜାତି ଆଦିମ ଅବସ୍ଥାଠାରୁ ଚତୁର୍ଥ ମୂଳ ଜାତିର ମଧ୍ୟଭାଗ ପର୍ଯ୍ୟନ୍ତ ପାର୍ଥିବ କାମନାରେ ଜଡ଼ିତ ହୋଇ ବହୁତ ଦୁଷ୍କର୍ମମାନ କରିଛି ଓ ତାହାଦ୍ୱାରା ସମୂହ ଗୁରୁକର୍ମ ଅର୍ଜିଛି । ସେଥିରୁ ମାନବ ଜାତିକୁ ଉଦ୍ଧାର କରିବାକୁ ପ୍ରଥମେ ଚନ୍ଦ୍ରରୁ ଓ ପରେ ଶୁକ୍ର ଗ୍ରହରୁ ମହାତ୍ମାମାନେ ପୃଥିବୀକୁ ଆସି ଆଧ୍ୟାତ୍ମିକ ଜାଗରଣର ଶୁଭାରମ୍ଭ କଲେ । ପରେ ମାନବ ଜାତିରୁ ଗୌତମ ବୁଦ୍ଧ ଓ ଅନ୍ୟମାନେ ଏହି ଦାୟିତ୍ୱ ଗ୍ରହଣ କଲେ । କିନ୍ତୁ ସେମାନଙ୍କ ସଂଖ୍ୟା ଅତି କମ୍ । ପ୍ରତ୍ୟେକ ସାଧକର ସେମାନଙ୍କୁ ତାଙ୍କର ବିଶାଳ କାର୍ଯ୍ୟରେ ସାହାଯ୍ୟ କରିବା ଆବଶ୍ୟକ । ଅସତ୍ ଲୋକଙ୍କୁ ହୀନ ଦୃଷ୍ଟିରେ ଦେଖିଲେ କିମ୍ବା ତାହାଙ୍କଠାରୁ ଦୂରେଇ ଗଲେ ଏହି ସାହାଯ୍ୟ କାର୍ଯ୍ୟ କରିବା ସମ୍ଭବ ହେବ ନାହିଁ ।

ମହାତ୍ମା ହିଲାରିଅନ୍ କହିଛନ୍ତି—

**ଏପରି କଲେ ତୁମେ ଆଧ୍ୟାତ୍ମିକ ଆନନ୍ଦର ଅଂଶୀଦାର ହେବ । ତୁମକୁ ଅନେକ କଷ୍ଟ ଓ ମାନସିକ ଦୁଃଖ ସ୍ୱୀକାର କରିବାକୁ ହେବ, କିନ୍ତୁ ତୁମେ କ୍ରମବର୍ଦ୍ଧମାନ ଅଲୌକିକ ଆନନ୍ଦ ପ୍ରାପ୍ତ ହେବ ।**

ମହାତ୍ମାମାନଙ୍କ କାର୍ଯ୍ୟରେ ସହାୟକ ହେବାଦ୍ୱାରା ସାଧକ ଦୀକ୍ଷା ଲାଭ କରେ ଓ ଦୀକ୍ଷା ଲାଭ କରିବା ପରେ ତାହାର ମହାତ୍ମାମାନଙ୍କ ସହିତ ପ୍ରତ୍ୟକ୍ଷ ସମ୍ପର୍କ ହୁଏ । ତାହାଦ୍ୱାରା ସାଧକ ଆଧ୍ୟାତ୍ମିକ ଆନନ୍ଦର ଅଂଶୀଦାର ହୁଏ । କିନ୍ତୁ ଏଥିପାଇଁ ଅନେକ କଷ୍ଟ ସହିବାକୁ ହୁଏ । ମାନବ ଜାତିର କୁକର୍ମଜନିତ ସମସ୍ତ ଦୁଃଖକଷ୍ଟ ତାହାକୁ ଅନୁଭବ କରିବାକୁ ହୁଏ ।

ପ୍ରଥମେ ସାଧକ ନିଜ ଅନ୍ତରରେ ଆନନ୍ଦ ଓ ମାନବ ଜାତିର ଦୁଃଖର ଅନୁଭବ ମଧ୍ୟରେ ଦୋଦୁଲ୍ୟମାନ ଅବସ୍ଥାରେ ଥାଏ । ଏସବୁ ମଧ୍ୟରେ ତାହାକୁ ନିଜର ଭାରସାମ୍ୟ ରଖିବାକୁ ହୁଏ । ସାଧାରଣ ମାନବର ଗୋଟିଏ ଜୀବନରେ ପ୍ରାରବ୍ଧ କର୍ମ ଦଶ ଭାଗରୁ ଏକ ଭାଗ ଓ କ୍ରିୟମାଣ କର୍ମ ନଅ ଭାଗ । ମନୁଷ୍ୟ ଯାହା ଭୋଗ କରେ ସେସବୁ ତାହାର ସ୍ୱୋପାର୍ଜିତ । ଦୁଃଖ କଷ୍ଟ ଭୋଗ କରି ମନୁଷ୍ୟ ଶିକ୍ଷା ଲାଭ କରେ । ଏହାହିଁ ପ୍ରକୃତିର ନିୟମ । ତେଣୁ ମାନବ ଜାତିର ଦୁଃଖ କଷ୍ଟ ସାଧକ ଅନୁଭବ କଲେ ମଧ୍ୟ ସେଥିରେ ସେ ଅଭିଭୂତ ହୁଏ ନାହିଁ । ସେ କ୍ରମଶଃ ବୁଝିଥାଏ ଯେ ଯାହା ହେଉଛି ତାହା ମାନବ ଜାତିର ସମୂହ କଲ୍ୟାଣ ପାଇଁ ହେଉଛି । ସେଥିପାଇଁ ତାହାର ମାନବ ଜାତି ପ୍ରତି ଅନୁକମ୍ପା ହୁଏ ଓ ସେ ମହାତ୍ମା-ମାନଙ୍କ ଚେଲା ଭାବେ ମାନବ କଲ୍ୟାଣ କାର୍ଯ୍ୟ କରେ । ସେ ଆଉ ଦୋଦୁଲ୍ୟମାନ ଅବସ୍ଥାରେ ରୁହେ ନାହିଁ । ନିଜର ଭାରସାମ୍ୟ ସବୁ ଅବସ୍ଥାରେ ରକ୍ଷା କରିପାରେ ।

## ଏକାଦଶ ଅଧ୍ୟାୟ—୨୧ଶ ଉକ୍ତି

୨୧ । ଝଡ଼ ଝଞ୍ଜା ଅନ୍ତେ ଯେଉଁ ନୀରବତା ଆସେ, ସେହି ସମୟରେ ଫୁଲର କଢ଼ ପ୍ରସ୍ଫୁଟିତ ହେବ । ତାହା ପୂର୍ବରୁ ନୁହେଁ ।

**ଝଡ଼ ହେଉଥିବା ସମୟରେ ବୃକ୍ଷ ବୃଦ୍ଧିଲାଭ କରିବ । ଶାଖା ପ୍ରଶାଖା ମେଲାଇବ, ପତ୍ର ଓ କଢ଼ ହେବ । ନିମ୍ନ ମାନସ, କାମ ଓ ସ୍ଥୂଳ ଶରୀର ଏହି ବୃକ୍ଷ ସଦୃଶ । ଏହା ଆଧ୍ୟାତ୍ମିକ ଶକ୍ତିର ସମ୍ପୂର୍ଣ୍ଣ ଅଧୀନସ୍ଥ ହୋଇ ତାହାର ବ୍ୟବହାର ଉପଯୋଗୀ ନ ହେବା ପର୍ଯ୍ୟନ୍ତ ଆତ୍ମାର ଉନ୍ମୋଚନ ହେବନାହିଁ । ନିମ୍ନ ମାନସ, କାମ ଓ ସ୍ଥୂଳ ଶରୀର ଯେତେବେଳେ ଉଚ୍ଚତର ଆଧ୍ୟାତ୍ମିକ ଶକ୍ତିର କବଳିତ ହେବ, ସେତେବେଳେ ନିମ୍ନ ଜୀବନ-ଝଡ଼ର ଉପଶମ ହେବ ଓ ଶାନ୍ତ ନୀରବତା ପ୍ରକାଶ ପାଇବ । ସେହି ଶାନ୍ତ ନୀରବତା ମଧ୍ୟରେ କିଛି ଘଟିବ, ଯାହା ପଥ ପ୍ରାପ୍ତିର ପ୍ରମାଣ ହେବ । ବକ୍ତା ନ ଥାଇ ବାଣୀ ଶୁଣାଯିବ—ଦେହ ବିହୀନ ବାର୍ତ୍ତାବହ ଆସିବ—ଆତ୍ମା ଉନ୍ମୁକ୍ତ ହେବ । ଝଡ଼ ହେଉଥିବା ସମୟରେ ଏହାକୁ ଅନୁଭବ କରାଯାଇ-ପାରେ । ଏହାର ସନ୍ଧାନ କରାଯାଇପାରେ ଓ ଏହା ଅଭିଳାଷ କରାଯାଇପାରେ ।**

ଆତ୍ମାର ଉନ୍ମୋଚନକୁ ଫୁଲର କଢ଼ ପ୍ରସ୍ଫୁଟିତ ହେବା ସହିତ ତୁଳନା କରାଯାଇଛି । ଝଡ଼ ହେବା ସମୟରେ ବୃକ୍ଷର ଶକ୍ତିର ପରୀକ୍ଷା ହୁଏ ଓ ଏହି ଶକ୍ତି କ୍ରମଶଃ ବୃଦ୍ଧି ପାଏ । ଝଡ଼ର ସମାପ୍ତି ହେଲେ ଶାନ୍ତ ବାତାବରଣରେ କଢ଼ ମୁକୁଳିତ ହୁଏ । ସଂସାର ଜଞ୍ଜାଳରେ ବ୍ୟସ୍ତ ଥିବା ବେଳେ ମନୁଷ୍ୟ ନାନାବିଧ ଦୁଃଖ କଷ୍ଟ ଭୋଗ କରେ । ଏହାହିଁ ଝଡ଼ । ନିମ୍ନ ମାନସ, କାମ ଓ ସ୍ଥୂଳ ଶରୀରର ଆକର୍ଷଣ ଏହି ଝଡ଼ର କାରଣ । ଏହା

ଯେତେବେଳେ ବଶୀଭୂତ ହୋଇ ଉଚ୍ଚ ଆଧ୍ୟାତ୍ମିକ ଶକ୍ତି ଦ୍ୱାରା ଚାଳିତ ହୁଏ ସେତେବେଳେ ଶାନ୍ତ ବାତାବରଣ ହୁଏ ଓ ଆତ୍ମାର ଉନ୍ମୋଚନ ହୁଏ ।

ନିମ୍ନ ମାନସ, କାମ ଓ ସ୍ଥୂଳ ଶରୀରର ଆକର୍ଷଣ ସମ୍ପୂର୍ଣ୍ଣ ତ୍ୟାଗ କରିପାରିଲେ ସବୁ କିଛି ବଦଳିଯାଏ । ସଂସାରର କୌଣସି ଘଟଣା ବିଚଳିତ କରେ ନାହିଁ । ସତ୍ୟର ସନ୍ଧାନ ମିଳେ । ଏହାହିଁ ପ୍ରମାଣ କରେ ଯେ ସାଧକର ପଥ ପ୍ରାପ୍ତି ହୋଇଛି । ସେ ଅବସ୍ଥା ପ୍ରାପ୍ତ ହେବା ପୂର୍ବରୁ ସାଧକ ସଂସାର କବଳରୁ ମୁକ୍ତ ହୋଇ ନ ଥିଲେ ମଧ୍ୟ ନିଜର ଲବ୍ଧ ଜ୍ଞାନ ଓ ଅନୁଭୂତି ଦ୍ୱାରା ସେହି ସତ୍ୟର ସନ୍ଧାନ କରେ, ଅଭିଳାଷ କରେ ଓ ଅନୁଭବ କରେ । ଏହାହିଁ ତାହାକୁ ପ୍ରେରଣା ଯୋଗାଏ ।

**ନୀରବତା ଏକ ମୁହୂର୍ତ୍ତପାଇଁ ହୋଇପାରେ କିମ୍ବା ଏକ ହଜାର ବର୍ଷ ପାଇଁ ହୋଇପାରେ । ଏହାର ସମାପ୍ତି ହେବ । କିନ୍ତୁ ଏହି ଅନୁଭୂତି ତୁମକୁ ଶକ୍ତି ଦେବ । ନିମ୍ନ ଆକର୍ଷଣ ସହିତ ବାରମ୍ବାର ସଂଗ୍ରାମ କରି ଜୟଲାଭ କରିବାକୁ ହେବ । ପ୍ରକୃତି କେବଳ ଅଳ୍ପ କ୍ଷଣ ପାଇଁ ନିଶ୍ଚଳ ରୁହେ ।**

ଆତ୍ମା ଉନ୍ମୋଚନ ହେବାର ସମୟ ଯେ କୌଣସି ଅବସ୍ଥାରେ ଆସିପାରେ । ଏହା ମନୁଷ୍ୟ ଦେହ ଧାରଣ କରିବା ସମୟରେ ଆସିପାରେ କିମ୍ବା ଉଚ୍ଚତର ଅବସ୍ଥାରେ ଆସିପାରେ । ମନୁଷ୍ୟ ଦେହ ଧାରଣ କରିବା ଅବସ୍ଥାରେ ଏହା ଏକ ମୁହୂର୍ତ୍ତ ପାଇଁ ଆସେ । ଦେବାଚନ ଅବସ୍ଥାରେ ଏହା ଏକ ହଜାର ବର୍ଷ ପାଇଁ ଆସିପାରେ । ଯେତେବେଳେ ଆସିଲେ ମଧ୍ୟ ଏହାର ସମାପ୍ତି ହୁଏ । ପ୍ରକୃତି କେବଳ ଅଳ୍ପକାଳପାଇଁ ନିଶ୍ଚଳ ରୁହେ । ଜୀବନ୍ମୁକ୍ତ ନ ହେବା ପର୍ଯ୍ୟନ୍ତ ବାରମ୍ବାର ନିମ୍ନ ଆକର୍ଷଣ ସହିତ ସଂଗ୍ରାମ କରି ଜୟଲାଭ କରିବାକୁ ହେବ ।

ମହାତ୍ମା ହିଲାରିଅନ୍ କହିଛନ୍ତି—

**ଫୁଲର କଢ଼ ମୁକୁଳିତ ହେବା ଗୋଟିଏ ମହାନ୍ ମୁହୂର୍ତ୍ତ । ସେତେବେଳେ ଚେତନା ଜାଗ୍ରତ ହୁଏ, ଆତ୍ମବିଶ୍ୱାସ, ଜ୍ଞାନ ଓ ନିଶ୍ଚିତତା ଆସେ । ସାଧକ ସେତେବେଳେ ବିସ୍ମୟରେ ଅଭିଭୂତ ହୁଏ ଓ ପର ମୁହୂର୍ତ୍ତରେ ସନ୍ତୋଷ ଲାଭ କରେ—ଯାହାକି ନିଃଶଙ୍କତା ।**

ଫୁଲର କଢ଼ ମୁକୁଳିତ ହେବା ଗୋଟିଏ କ୍ରମାଗତ ପ୍ରସ୍ତୁତି। ମୁକୁଳିତ ହେବା ପୂର୍ବରୁ କଢ଼ର କ୍ରମାଗତ ବିକାଶ ହେଉଥାଏ। ମୁକୁଳିତ ହେବା ସ୍ତରକୁ ଆସିଲେ କଢ଼ ଅଳ୍ପ ସମୟରେ ମୁକୁଳିତ ହୁଏ। ଚେତନାର ବିକାଶ ମଧ୍ୟ ଅନୁରୂପ। ଚେତନାର କ୍ରମାଗତ ବିକାଶ ହେଉଥାଏ। ଉପଯୁକ୍ତ ସ୍ତରକୁ ଅସିଲେ ଚେତନାର ଆଧ୍ୟାତ୍ମିକ ଉନ୍ମୋଚନ ହୁଏ। ଏହା ଦୀକ୍ଷା ପ୍ରାପ୍ତି ସମୟରେ ହୁଏ। ସେତେବେଳେ ଆତ୍ମା-ବୁଦ୍ଧି ଅବଲୋକନ କରି ସାଧକ ଜ୍ଞାନ ଓ ନିଷ୍ଠୟତା ଲଭ କରେ, ବିସ୍ମୟରେ ଅଭିଭୂତ ହୁଏ ଓ ସନ୍ତୋଷ ଲଭ କରେ। ଏହି ସନ୍ତୋଷ ହିଁ ନିଃଶବ୍ଦତା। ସମସ୍ତ ସତ୍ୟ ଏକ ସମୟରେ ଲଭ କରାଯାଏ ନାହିଁ। ତାହା କ୍ରମଶଃ ଲଭ ହୁଏ।

ମହାତ୍ମା ହିଲରିଅନ୍ କହିଛନ୍ତି—

**ଏହି ନିଃଶବ୍ଦତା ଯେଉଁମାନେ ଅତିକ୍ରମ କରିଛନ୍ତି, ତାହାଦ୍ୱାରା ଶାନ୍ତି ପାଇଛନ୍ତି ଓ ଶକ୍ତି ଧାରଣ କରିଛନ୍ତି। ସେମାନେ ଇଚ୍ଛା କରନ୍ତି ଯେ ସାଧକ ମଧ୍ୟ ଉକ୍ତ ସ୍ତର ଅତିକ୍ରମ କରୁ।**

ସାଧକ ସଂସାରରୁ ବିମୁକ୍ତ ନୁହେଁ। ତାହାକୁ ଅନେକ ସାଂସାରିକ କାର୍ଯ୍ୟ କରିବାକୁ ହୁଏ। ସେସବୁ ସେ ସୁଷ୍ଠୁ ରୂପେ ସମ୍ପନ୍ନ କରୁ, କିନ୍ତୁ ତାହାର ଆଧ୍ୟାତ୍ମିକ ସ୍ଥିତି ଭୁଲି ନ ଯାଉ। ଆଧ୍ୟାତ୍ମିକ ବିକାଶ ପାଇଁ ସର୍ବଦା ଚେଷ୍ଟା କରୁ। ଯେଉଁମାନଙ୍କ ଚେତନା ମୁକୁଳିତ ହୋଇଛି ସେମାନେ ସଂସାରର ସମସ୍ତ ବିଷୟ ଜାଣନ୍ତି, ସେଥିରୁ ମୁକ୍ତ ହେବାର ପଥ ଜାଣନ୍ତି ଓ ମୁକ୍ତି ଓ ଶକ୍ତିର ସନ୍ତୋଷ ପ୍ରାପ୍ତ ହୋଇଛନ୍ତି। ସେମାନେ ଇଚ୍ଛା କରନ୍ତି ଯେ ସାଧକର ଚେଷ୍ଟା ସଫଳ ହେଉ, ସାଧକ ମୁକ୍ତି ଓ ଶକ୍ତିର ସନ୍ତୋଷ ପ୍ରାପ୍ତ ହେଉ।

ମହାତ୍ମା ହିଲରିଅନ୍ କହିଛନ୍ତି—

**ସାଧକ ଯେତେବେଳେ ଶିକ୍ଷାର ସୁବୃହତ୍ କକ୍ଷରେ ଉପନୀତ ହୋଇ ପାରିବ, ସେତେବେଳେ ସେ ତାହାର ଗୁରୁଙ୍କୁ ପାଇବ।**

ଶିକ୍ଷାର ସୁବୃହତ୍ କକ୍ଷ କୌଣସି ଅଟ୍ଟାଳିକାର କକ୍ଷ ନୁହେଁ। ଏହା ଭୁବଃ (astral) ସ୍ତରକୁ ସୂଚିତ କରୁଛି। କାରଣ ଏହି ସ୍ତରରେ ସାଧକ ପ୍ରଥମେ ତାହାର ଶିକ୍ଷା ଲଭ କରିଥାଏ। ସାଧକ ଭୁବଃ ସ୍ତରରେ ତାହାର

ଗୁରୁଙ୍କର ଜଣେ ଶିକ୍ଷିତ ବ୍ୟକ୍ତିଙ୍କୁ ପାଏ ଓ ତାହାଙ୍କଠାରୁ ପ୍ରଥମ ଶିକ୍ଷା ଲାଭ କରେ । ଆବଶ୍ୟକ ସ୍ଥଳେ ଗୁରୁ ନିଜେ ଆସି ପାରନ୍ତି, କିନ୍ତୁ ସାଧକର ଶିକ୍ଷାର ଦାୟିତ୍ୱ ଜଣେ ଶିକ୍ଷିତ ବ୍ୟକ୍ତି ବହନ କରେ ।

ଏ ସମୟରେ ସାଧକ ସାବଧାନ ହେବା ଉଚିତ । କାରଣ ଭୁବଃ ସ୍ତର ଅତ୍ୟନ୍ତ ମାୟାପୂର୍ଣ୍ଣ । ସେ ସ୍ତରରେ ଅନେକ ଭୁବଃ ଶରୀରଧାରୀ ଅଛନ୍ତି ଯେଉଁମାନେ କି ନିଜକୁ ଶିକ୍ଷିତ ବ୍ୟକ୍ତି ବୋଲି ସାଧକକୁ ଶିକ୍ଷା ଦେବାର ଛଳନା କରନ୍ତି । ବାସ୍ତବିକ୍ ସେମାନେ ସାଧକଠାରୁ କମ୍ ଜାଣନ୍ତି ।

ମହାତ୍ମା ହିଲାରିଅନ୍ କହିଛନ୍ତି—

**ସାଧକର ଯାହା କାମ୍ୟ ସେ ତାହା ପାଇବ । ସାଧାରଣ ଲୋକ ମଧ୍ୟ ଆଧ୍ୟାତ୍ମିକ କାମନା କରେ, କିନ୍ତୁ ତାହା କେବଳ ମାନସିକ । ତେଣୁ ତାହା ମାନସିକ ସ୍ତରରେ ସୀମିତ । ଉଚ୍ଚ ସ୍ତରକୁ ତାହା ପହଞ୍ଚିପାରେ ନାହିଁ । ସାଧକ ଏ ପର୍ଯ୍ୟନ୍ତ କୁହାଯାଇଥିବା ଏକବିଂଶ ଉକ୍ତି ଗୁଡ଼ିକରେ ଉତ୍ତୀର୍ଣ୍ଣ ହେଲେ ତାହାର କାମ୍ୟ ପ୍ରାପ୍ତ ହେବ ।**

ଏହି ଉକ୍ତି ପ୍ରଥମ ଶିକ୍ଷା ଲାଭ କରିଥିବା ବ୍ୟକ୍ତି ପାଇଁ ଉଦ୍ଦିଷ୍ଟ । ସେ ଏ ପର୍ଯ୍ୟନ୍ତ କୁହାଯାଇଥିବା ଏକବିଂଶ ଉକ୍ତିଗୁଡ଼ିକରେ ଉତ୍ତୀର୍ଣ୍ଣ ହୋଇଛି । ସାଧାରଣ ଲୋକ ଜ୍ଞାନଲାଭ କରିବାକୁ ଚେଷ୍ଟା କରିବାରେ ତାହାର ମାନସିକ ଶକ୍ତିର ବିନିଯୋଗ କରୁଛି । ସେ ମାନସିକ ସ୍ତରରେ ଜ୍ଞାନ ଲାଭ କରିବ । କିନ୍ତୁ ତାହା ବାସ୍ତବ ଜ୍ଞାନ ନୁହେଁ । ବାସ୍ତବ ଜ୍ଞାନ ବୁଦ୍ଧି ସ୍ତରରେ ଲାଭ ହୁଏ ।

ଭୁବଃ (astral) ଓ ନିମ୍ନ ମାନସ (lower mental) ଶରୀର ଉନ୍ନତ ନ ହେଲେ ଆଧ୍ୟାତ୍ମିକ ପ୍ରଗତି ସମ୍ଭବ ନୁହେଁ । ତେଣୁ ପ୍ରଥମେ ଚରିତ୍ରଗତ ଉନ୍ନତି ହେବା ଆବଶ୍ୟକ । ଅନ୍ୟମାନଙ୍କ ଦୋଷ ଦୁର୍ବଳତା ଦେଖିବା ପରିବର୍ତ୍ତେ ସେମାନଙ୍କ ସମସ୍ୟା, ଦୁଃଖ ଓ ଅବସ୍ଥା ଗଭୀରଭାବେ ଅନୁଭବ କରିବା ଆବଶ୍ୟକ । ଜ୍ଞାନର ବୃଦ୍ଧି ସଙ୍ଗେ ନମ୍ର ବିନୀତ ଭାବ ବୃଦ୍ଧି ପାଇବା ଆବଶ୍ୟକ ।

ସାଧାରଣ ଶିକ୍ଷିତ ଲୋକ ବିବେକକୁ ପ୍ରାଧାନ୍ୟ ଦିଏ । କିନ୍ତୁ ବିବେକ ଆତ୍ମାର ପ୍ରଗତି ସହିତ ସମ୍ପୃକ୍ତ । ସାଧାରଣ ଶିକ୍ଷିତ ଲୋକର ଆତ୍ମା ସମ୍ପୂର୍ଣ୍ଣ ବିକଶିତ ନୁହେଁ । ତେଣୁ ତାହାର ବିବେକ ସର୍ବଦା ଉଚିତ୍ ପନ୍ଥାର ନିର୍ଦ୍ଦେଶ ଦିଏନାହିଁ । ଏହି କାରଣରୁ ବିବେକ ଅନୁମୋଦିତ ପନ୍ଥା ସମସ୍ତଙ୍କର ଏକ ନୁହେଁ । ମନୁଷ୍ୟର ଆଧ୍ୟାତ୍ମିକ ବିକାଶ ସାଧାରଣତଃ ତାହାର ଚିନ୍ତା, ଅନୁଭବ ଶକ୍ତି, ବାକ୍ୟ ଓ କାର୍ଯ୍ୟରେ ପ୍ରତିଫଳିତ ହୁଏ ।

ସ୍ୱତଃସିଦ୍ଧ ଜ୍ଞାନ (intuition), ବିବେକ (conscience) ଓ ପ୍ରବୃତ୍ତିଗତ ପ୍ରେରଣା (impulse) ପ୍ରତ୍ୟେକ ଅନ୍ୟମାନଙ୍କଠାରୁ ଭିନ୍ନ । ସ୍ୱତଃସିଦ୍ଧ ଜ୍ଞାନ ବୁଦ୍ଧି ସ୍ତରରୁ ଆସେ । ତାହା ପ୍ରତ୍ୟକ୍ଷ ଜ୍ଞାନ, ତେଣୁ ନିର୍ଭୁଲ । ବିବେକର ନିର୍ଦ୍ଦେଶ କାରଣ ଶରୀରରୁ (causal body) ଆସେ । କାରଣ ଶରୀର ସମ୍ପୂର୍ଣ୍ଣ ବିକଶିତ ହୋଇ ନ ଥିବାରୁ ତାହା କେବଳ ପରୋକ୍ଷ ଜ୍ଞାନ ଦେଇପାରେ । ତେଣୁ ସେଥିରେ ତ୍ରୁଟି ରହିପାରେ । ପ୍ରବୃତ୍ତିଗତ ପ୍ରେରଣା ଭୁବଃ ଶରୀରରୁ (astral body) ଆସେ । ତାହା ଭ୍ରମାତ୍ମକ ହୋଇପାରେ ।

ସାଧାରଣ ଶିକ୍ଷିତ ଲୋକ ବିବେକାନୁମୋଦିତ କାର୍ଯ୍ୟ କରିବା ଛଡ଼ା ଅନ୍ୟ ଉପାୟ ନାହିଁ । ସେ ତାହାର ଚିନ୍ତା, ଅନୁଭୂତି, ବାକ୍ୟ ଓ କାର୍ଯ୍ୟକୁ ସମୀକ୍ଷା କରିବା ଆବଶ୍ୟକ । ଯଦି ଏସବୁ ସତ୍ୟ, ନ୍ୟାୟ ଓ ଦୟାର ଅନୁକୂଳ ହୋଇଥାଏ ତାହା ହେଲେ ସେଥିରେ ଭ୍ରାନ୍ତିର ସମ୍ଭାବନା କମ୍ । ଆନି ବେସାନ୍ତ ଏ ବିଷୟରେ ଦୁଇଟି ନିୟମ ପାଳନ କରିବାକୁ ଉପଦେଶ ଦେଇଛନ୍ତି । ପ୍ରଥମତଃ, ଯଦି ସମୟ ଅଛି ତେବେ କିଛି କାଳ ଚୁପ୍ ହୋଇ ରୁହ । ଯଦି ବିବେକ କିମ୍ବା ପ୍ରେରଣା ଅନୁମୋଦିତ ପନ୍ଥା ଭ୍ରମାତ୍ମକ ହୋଇଥିବ ତାହା ହେଲେ ତାହା ଆପେ ଅପସରିଯିବ । ଯଦି ତାହା ସ୍ୱତଃସିଦ୍ଧ ଜ୍ଞାନାତ୍ମକ ହୋଇଥିବ ତାହା ସ୍ଥିର ଭାବେ ଅନୁପ୍ରାଣିତ କରିବ । ଦ୍ୱିତୀୟତଃ, ସ୍ୱତଃସିଦ୍ଧ ଜ୍ଞାନର ନିର୍ଦ୍ଦେଶ ସର୍ବଦା ନିଃସ୍ୱାର୍ଥପର । ଏହି ଦୁଇଟି ନିୟମ ଅନୁସାରେ କାର୍ଯ୍ୟ କଲେ ଭ୍ରମ ହେବାର ସମ୍ଭାବନା ନାହିଁ ।

ପୂର୍ବୋକ୍ତ ଏକବିଂଶ ଉକ୍ତି ଉତ୍ତୀର୍ଣ୍ଣ ହେବା ପରେ ସାଧକ ଦୀକ୍ଷା ଗ୍ରହଣ ସମୟରେ ବୁଦ୍ଧି ସ୍ତରରେ ସ୍ୱତଃସିଦ୍ଧ ଜ୍ଞାନ ଲାଭ କରେ । ଏହା ଲାଭ କଲେ ସେ ନିଜକୁ ଅନ୍ୟମାନଙ୍କ ସହିତ ଏକ ଥିବାର ପ୍ରତ୍ୟକ୍ଷ ଜ୍ଞାନ ଲାଭ

କରେ । ଅନ୍ୟର ଚେତନା ସହିତ ନିଜର ଚେତନାକୁ ଏକ କରି ସେ ସମସ୍ତଙ୍କୁ ବୁଝିପାରେ ଓ ସମସ୍ତଙ୍କ ପ୍ରତି ସମବେଦନଶୀଳ ହୋଇଯାଏ । ଏପରି ଜ୍ଞାନ ଲାଭ କରିଥିବାରୁ ସେ ଅନ୍ୟମାନଙ୍କୁ ଯଥୋପଯୋଗ୍ୟ ଉଚିତ୍ ସାହାଯ୍ୟ ଦାନ କରିପାରେ ।

ମହାତ୍ମା ହିଲାରିଅନ୍ କହିଛନ୍ତି—

**ନିଗୂଢ଼ ଭାବରେ ଅଧ୍ୟୟନ କରିବା ହେଉଛି ଆତ୍ମା ଦୃଷ୍ଟିରେ ଅଧ୍ୟୟନ କରିବା । ଅଭିଳାଷ କରିବା ହେଉଛି ନିଜ ଅନ୍ତରରେ ଉଚ୍ଚ ଆଧ୍ୟାତ୍ମିକ ଆକାଙ୍‌କ୍ଷାର ତୃଷ୍ଣା ଅନୁଭବ କରିବା । ଅଧ୍ୟୟନ କରି ପାରିବା ଅଥ ସେହି ତୃଷ୍ଣାକୁ କିଛି ପରିମାଣରେ ତୃପ୍ତ କରି ପାରିବା ।**

କେବଳ ଅଧ୍ୟୟନ କରି ବୁଝିବା ଆଧ୍ୟାତ୍ମିକ ଆକାଙ୍‌କ୍ଷା ନୁହେଁ । ତାହା କାରଣ ଶରୀର ସହିତ ସମ୍ପୃକ୍ତ ହୋଇପାରେ । ଉଚ୍ଚ ଆଧ୍ୟାତ୍ମିକ ଆକାଙ୍‌କ୍ଷା ବୁଦ୍ଧି ସ୍ତର ସହିତ ସମ୍ପୃକ୍ତ ଓ ସେହି ସ୍ତରରେ ତାହା ତୃପ୍ତ ହୋଇପାରେ ।

ଭୁବଃଲୋକ ବୁଦ୍ଧିର ଛାୟା ସ୍ୱରୂପ । ଅନେକ କ୍ଷେତ୍ରରେ ଅଭିଳାଷ ବୁଦ୍ଧି ସ୍ତରରୁ ନିମ୍ନଗାମୀ ହୋଇ ଭୁବଃ ଲୋକରେ ଆବେଗ ବା ଉଚ୍ଛ୍ୱାସ ରୂପେ ପ୍ରକାଶ ପାଏ । ସାଧକ ଏଥି ପ୍ରତି ସତର୍କ ରହିବା ଆବଶ୍ୟକ । ଆବେଗ ବା ଉଚ୍ଛ୍ୱାସ ଦ୍ୱାରା ତାହାର ପ୍ରଗତି ବାଧାପ୍ରାପ୍ତ ହେବ । ବୁଦ୍ଧି ସ୍ତରର ଗୌରବମୟ ଚିଦାନନ୍ଦ ଅବସ୍ଥା ଭୁବଲୋକର ଆବେଗ ଓ ଉଚ୍ଛ୍ୱାସଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଆବେଗ ଓ ଉଚ୍ଛ୍ୱାସରେ ମନୁଷ୍ୟ ତାହାର ନିଜତ୍ୱ ହରାଇ ଦିଏ । ଚିଦାନନ୍ଦ ଅବସ୍ଥାରେ ସେ ତାହାର ନିଜତ୍ୱ ହରାଏ ନାହିଁ । ଆବେଗ ଓ ଉଚ୍ଛ୍ୱାସ ଏକ ଅଶାନ୍ତ ବାତାବରଣ ସୃଷ୍ଟି କରେ । ଚିଦାନନ୍ଦ ଅବସ୍ଥା ଏକ ଅବର୍ଣ୍ଣନୀୟ ଶାନ୍ତ ଓ ଆନନ୍ଦର ଅନୁଭବ ଆଣିଦିଏ ।

ମହାତ୍ମା ହିଲାରିଅନ୍ କହିଛନ୍ତି—

**ସାଧକ ଶିକ୍ଷା ଗ୍ରହଣ କରିବାର ଅଧିକାରୀ ହେଲେ ତାହାକୁ ଶିଷ୍ୟଭାବେ ଗ୍ରହଣ କରାଯାଏ । ସେ ନିଜର ପ୍ରଦୀପ ଜାଳିଥିବାରୁ ତାହାର ଆଲୋକ ଲୁଚି ରହି ପାରେନା ।**

ଆଧ୍ୟାତ୍ମିକ ଦୃଷ୍ଟିରେ ମାନବ ସମାଜ ବର୍ତ୍ତମାନ ଅନ୍ଧକାରାଚ୍ଛନ୍ନ । ଏହି ଘୋର ଅନ୍ଧକାରରେ ମୁଷ୍ଟିମେୟ ମନୁଷ୍ୟ ଶୁଦ୍ଧ ଆଧ୍ୟାତ୍ମିକ ଜ୍ଞାନ ଆହରଣ କରି ଦିବ୍ୟ ଜୀବନ ଯାପନ କରିବାକୁ ଚେଷ୍ଟା କରୁଛନ୍ତି । ଏହି ସାଧକମାନେ ବହୁ କଷ୍ଟ ସହ୍ୟ କରି ଅନେକ ବାଧା ଅତିକ୍ରମ କରି ଏପରି ଏକ ଉଚ୍ଚ ସ୍ତରରେ ପଦାର୍ପଣ କରନ୍ତି ଯେଉଁଠାରେ ମାନବ ସମାଜର ଘୋର ଅନ୍ଧକାରରେ ସେମାନେ କ୍ଷୀଣ ଆଲୋକ ପରି ଜଣାପଡ଼ନ୍ତି । ଏପରି ଆଲୋକର ଆବିର୍ଭାବ ପାଇଁ ମହାତ୍ମାମାନେ ସର୍ବଦା ଦୃଷ୍ଟି ରଖିଥାଆନ୍ତି ।

ଯେତେବେଳେ ଏପରି ଏକ ଆଲୋକର ଆବିର୍ଭାବ ହୁଏ, ସେହି ସାଧକର ନିର୍ଦ୍ଦିଷ୍ଟ ଗୁରୁ (ମହାତ୍ମା ବା Master) ତାଙ୍କର ଜଣେ ଚେଲାକୁ ସେହି ସାଧକର ଦାୟିତ୍ୱ ଦିଅନ୍ତି । ଚେଲା ସାଧକକୁ ସ୍ଥୂଳ ଶରୀରରେ କିମ୍ବା ଭୁବଃ ଶରୀରରେ ଯଥୋପଯୋଗୀ ଶିକ୍ଷା ଦିଅନ୍ତି । ଉପଯୁକ୍ତ ସମୟରେ ସେ ସାଧକକୁ ତାହାର ଗୁରୁଙ୍କ ନିକଟକୁ ଭୁବଃ ଶରୀରରେ ନେଇଯାଆନ୍ତି । ଗୁରୁ ସାଧକକୁ କିଛି ଶିକ୍ଷା ଓ ଉପଦେଶ ଦିଅନ୍ତି ଓ ତାହାକୁ ଶିକ୍ଷାନବିଶ୍ (probationer) ଭାବେ ଗ୍ରହଣ କରନ୍ତି । ଶିକ୍ଷାନବିଶ୍ ଭାବେ ସେ କୃତିତ୍ୱ ହାସଲ କଲେ ଗୁରୁ ତାହାକୁ ଦୀକ୍ଷା ଦିଅନ୍ତି ଓ ଶିଷ୍ୟ ଭାବେ ଗ୍ରହଣ କରନ୍ତି ।

ସାଧକ ଥିବା ଅବସ୍ଥାରେ ମଧ୍ୟ ତାହାର ନିର୍ଦ୍ଦିଷ୍ଟ ଗୁରୁ ତାହାକୁ ଅନେକ କାର୍ଯ୍ୟର ସୁଯୋଗ ଦିଅନ୍ତି, ଯାହାଦ୍ୱାରା ସେ ଆଧ୍ୟାତ୍ମିକ ମାର୍ଗରେ ଦ୍ରୁତ ପ୍ରଗତି କରିପାରିବ । ସେ ଅବସ୍ଥାରେ ମଧ୍ୟ ତାହାକୁ ଅନେକ ପରୀକ୍ଷାର ସମ୍ମୁଖୀନ ହେବାକୁ ହୁଏ । ସାଧକ ତାହାର ଉପଦେଷ୍ଟା ଓ ସାହାଯ୍ୟକାରୀ ଚେଲା ଓ ଗୁରୁଙ୍କୁ ଭୁବଃଲୋକରେ ଭେଟିଥିବା କଥା ସ୍ଥୂଳ ଜଗତରେ ଜାଗ୍ରତ ଥିବାବେଳେ ପ୍ରାୟ ତାହାର ସ୍ମରଣରେ ନ ଥାଏ । ତାହା ସ୍ଥୂଳ ଶରୀରର ସ୍ମରଣରେ ଆସିବାକୁ ଅନେକ ସମୟ ଲାଗେ ।

ମହାତ୍ମା ହିଲାରିଅନ୍ କହିଛନ୍ତି—

**ପ୍ରଥମ ସଂଗ୍ରାମରେ ଜୟଲାଭ ନ କରିବା ପର୍ଯ୍ୟନ୍ତ ଶିକ୍ଷା ଅସମ୍ଭବ । ମାନସିକ ସ୍ତରରେ ସତ୍ୟ ନିରୂପଣ କରାଯାଇପାରେ, କିନ୍ତୁ ତାହା ଆତ୍ମା ନିକଟରେ ପହଞ୍ଚି ପାରେ ନାହିଁ ।**

ପ୍ରଥମ ସଂଗ୍ରାମ ହେଉଛି ନିଜର କାମନା ଓ ଇନ୍ଦ୍ରିୟଗତ ସୁଖ-ସମ୍ଭୋଗ ବିରୁଦ୍ଧରେ । ଏହାକୁ ଜୟ କଲା ପରେ ଅଶୁଦ୍ଧ ମାନସ ସହିତ ସଂଗ୍ରାମ ହୁଏ । ଏହାକୁ ଜୟ କରିବା ପରେ ଆଧ୍ୟାତ୍ମିକ ଗୁପ୍ତବିଦ୍ୟା ଲାଭ କରିବା ପାଇଁ ସାଧକ ଉପଯୁକ୍ତ ହୁଏ । ସାଧକ ମାନସିକ ସ୍ତରରେ ସତ୍ୟର ସନ୍ଧାନ କରିପାରେ; କିନ୍ତୁ ଉପରୋକ୍ତ ଦୁଇଟି ପ୍ରାରମ୍ଭିକ ସଂଗ୍ରାମରେ ଜୟଲାଭ ନ କରିବା ପର୍ଯ୍ୟନ୍ତ ସେ ଆତ୍ମା ସ୍ତରରେ ସତ୍ୟର ଜ୍ଞାନ ଲାଭ କରିପାରେ ନାହିଁ ।

ବୁଦ୍ଧି ଆତ୍ମାର ବାହନ । ଆତ୍ମା ବୁଦ୍ଧି ଜରିଆରେ ନିଜକୁ ପ୍ରକାଶ କରେ । ସାଧକ ବୁଦ୍ଧି ସ୍ତରକୁ ଦୀକ୍ଷା ପ୍ରାପ୍ତି ସମୟରେ ଥରେ ଯାଏ ଓ ମନେକରେ ଯେ ସେ ପ୍ରଜ୍ଞାବାନ୍ ହୋଇଛି, ଯାହା ଜାଣିବାର କଥା ସେସବୁ ଜାଣିଛି । ଏ ଧାରଣା ଭୁଲ । ତାହାକୁ ଆହୁରି ଅନେକ ଶିକ୍ଷା ଲାଭ କରିବାକୁ ହୁଏ । ବାସ୍ତବିକ୍ ତାହାର ଗୁପ୍ତ ବିଦ୍ୟାର ଶିକ୍ଷା ଆରମ୍ଭ ହୋଇଛି ।

ଅନେକ ସମୟରେ ସାଧକ ଯାହା ଆଶା କରିଥାଏ ତାହା ହୁଏନା । ତାହାକୁ ବିପର୍ଯ୍ୟସ୍ତ ହେବାକୁ ପଡ଼େ । ସେତେବେଳେ ହତାଶ ହେବା ବା ଦୁଃଖ କରିବା ଅନୁଚିତ । କାରଣ, ଯାହା କିଛି ହୁଏ ତାହା ସମସ୍ତ ମାନବ ଜାତିର ଓ ସାଧକର କଲ୍ୟାଣ ପାଇଁ ହୁଏ । ନୈରାଶ୍ୟ ଓ ବିପର୍ଯ୍ୟୟ ସାଧକକୁ ଶିକ୍ଷା ଦିଏ ଓ ମାନବ କଲ୍ୟାଣ ପାଇଁ ତାହାର ଆବଶ୍ୟକତା ଅଛି ବୋଲି ବୁଝେ । ଏକଥା ବୁଝି ନ ପାରିଲେ ମଧ୍ୟ ସାଧକର ଏ ବିଷୟରେ ଦୃଢ଼ ବିଶ୍ୱାସ ଥିବା ଆବଶ୍ୟକ ।

ମହାତ୍ମା ହିଲାରିଅନ୍ କହିଛନ୍ତି—

**ସଂଗ୍ରାମର ଶେଷରେ ସାଧକ ଶାନ୍ତି ଲାଭ କରେ । ସେ ଶିକ୍ଷା ପାଇବାକୁ ଉପଯୁକ୍ତ ହୁଏ । ଏପରି ସ୍ତରକୁ ଆସିବା ପରେ ମଧ୍ୟ ସାଧକର ମନ ଇତସ୍ତତ ହୋଇପାରେ, ସେ ଦ୍ୱିଧା କରିପାରେ, ଏପରିକି ଜନ୍ମ ସ୍ତରକୁ ଫେରିଯାଇପାରେ । କିନ୍ତୁ ନୀରବ ବାଣୀ ତାହା ସହିତ ରହିବ ଓ ସମୟରେ ତାହା ଶୁଣାଯିବ ଓ ତାହାର ପାର୍ଥିବ ଆକର୍ଷଣ ଛିନ୍ନ ହୋଇଯିବ । ପାର୍ଥିବ ଆକର୍ଷଣର ଶକ୍ତିକୁ**

**କଷ୍ଟ ସହକାରେ ତ୍ୟାଗ କରି ସେ ପୁଣି ତାହାର ଉଚ୍ଚ ସ୍ତରକୁ ଫେରି ଆସିବ ।**

ଏପରି ହେଲେ ଉଚ୍ଚ ସ୍ତରକୁ ଫେରି ଆସିବାକୁ ଭୀଷଣ ସଂଗ୍ରାମ କରିବାକୁ ହୁଏ । ବହୁତ କଷ୍ଟ ସହ୍ୟ କରିବାକୁ ହୁଏ । ତେଣୁ ସାଧକକୁ ଏପରି ହେବାର ସମ୍ଭାବନା ବିରୁଦ୍ଧରେ ମୂଳରୁ ସଚେତନ ହେବା ଆବଶ୍ୟକ ।

ମହାତ୍ମା ହିଲାରିଅନ୍ କହିଛନ୍ତି—

**ତେଣୁ ମୁଁ କହିବି, "ଶାନ୍ତି ତୁମ ସହିତ ରହୁ ।" ଗୁରୁ କେବଳ ତାଙ୍କର ପ୍ରିୟ ଶିଷ୍ୟଙ୍କୁ କହିପାରନ୍ତି, "ମୋ'ର ଶାନ୍ତି ମୁଁ ତୁମକୁ ଦେଉଛି ।" କାରଣ ଗୁରୁ ଓ ତାଙ୍କର ପ୍ରିୟ ଶିଷ୍ୟ ମଧ୍ୟରେ ପ୍ରଭେଦ କିଛି ନାହିଁ ।**

ହିନ୍ଦୁମାନଙ୍କ ମଧ୍ୟରେ କେହି ନମସ୍କାର କଲେ ଅନେକ ସମୟରେ ବୟସ୍କ ଲୋକ "ଶାନ୍ତି" କହି ଆଶୀର୍ବାଦ କରିଥାଆନ୍ତି । "ଶାନ୍ତି ତୁମ ସହିତ ରହୁ" ସେହିପରି ଏକ ଆଶୀର୍ବାଦ । ମହାତ୍ମା ସାଧକକୁ ଏହି ଆଶୀର୍ବାଦ କରିଥାଆନ୍ତି । ଉଚ୍ଚକୋଟୀର ଚେଲା ମହାତ୍ମାଙ୍କ ସହିତ ଏକ ହୋଇଯାଇ ଥାଆନ୍ତି । ତେଣୁ ମହାତ୍ମା ତାହାଙ୍କୁ "ମୋର ଶାନ୍ତି ମୁଁ ତୁମକୁ ଦେଉଛି" କହି ଆଶୀର୍ବାଦ କରନ୍ତି ।

ମହାତ୍ମା ହିଲାରିଅନ୍ କହିଛନ୍ତି—

**କେତେକ ଲୋକ ଅଛନ୍ତି ଯେଉଁମାନେ କି ପ୍ରାଚ୍ୟ ପ୍ରଜ୍ଞା ବିଷୟରେ ଅଜ୍ଞ । କିନ୍ତୁ ସେମାନଙ୍କୁ ଏହି ପରମ ଆଶୀର୍ବାଦ ବାରମ୍ବାର ଦିଆଯାଇପାରେ ।**

ପାଶ୍ଚାତ୍ୟ ଦେଶର ଲୋକମାନେ ପ୍ରାଚ୍ୟ ପ୍ରଜ୍ଞା ବିଷୟରେ ସାଧାରଣତଃ କିଛି ଜାଣି ନ ଥାନ୍ତି । କିନ୍ତୁ ସେମାନଙ୍କ ମଧ୍ୟରେ ଏପରି ଲୋକ ଅଛନ୍ତି ଯେଉଁମାନେ ନିର୍ମଳ ଜୀବନଯାପନ କରି ନିଃସ୍ୱାର୍ଥପର ପରୋପକାରୀ ଜୀବନ କଟାଉଛନ୍ତି । ସେମାନେ ପ୍ରାଚ୍ୟ ପ୍ରଜ୍ଞା ବିଷୟରେ ଅଜ୍ଞ ଥିଲେ ମଧ୍ୟ ଏହି ଚରମ ଆଶୀର୍ବାଦ ବାରମ୍ବାର ପାଇବାର ଗୌରବ ଲାଭ କରିଥାଆନ୍ତି ।

ମହାତ୍ମା ହିଲାରିଅନ୍ କହିଛନ୍ତି—

△ **ଶ୍ରଦ୍ଧାର ସହିତ ଏହି ତିନୋଟି ସତ୍ୟକୁ ମନଯୋଗ କର। ସେ ସବୁ ସମତୁଲ।**

ଏହି ଉକ୍ତି ପୂର୍ବରୁ ଗୋଟିଏ ତ୍ରିକୋଣ ଚିହ୍ନ ଅଛି । ଏହା ଉକ୍ତ ତିନୋଟି ସତ୍ୟର ପ୍ରତୀକ ଓ ମହାତ୍ମାମାନଙ୍କ ସଙ୍କେତ । ମହାତ୍ମା ହିଲାରିଅନ୍ ଏହି ତିନୋଟି ସତ୍ୟ ମାବେଲ୍ କଲିନସ୍‌ଙ୍କୁ କହିଥିଲେ ଯାହାକି The Idyll of the white lotus ପୁସ୍ତକରେ ଅଛି । ଏହି ପୁସ୍ତକ ମହାତ୍ମା ହିଲାରିଅନ୍‌ଙ୍କ ଗୋଟିଏ ଜୀବନର କାହାଣୀ । ସେ ଜୀବନରେ ତାଙ୍କର ନାମ ସେନସା ଥିଲା ।

**ଏହି ତିନୋଟି ସତ୍ୟ ଅସୀମ । ଏହା ହଜିଯାଏନା, କିନ୍ତୁ ପ୍ରକାଶ ଉପଯୋଗୀ ନ ହେବା ପର୍ଯ୍ୟନ୍ତ ଏହା ନୀରବ ଥାଏ ।**

**ପ୍ରଥମ ସତ୍ୟ :— ମାନବର ଆତ୍ମା ଅବିନାଶୀ । ଏହାର ଭବିଷ୍ୟତ ଏପରି ଏକ ତତ୍ତ୍ୱର ଭବିଷ୍ୟତ ଯାହାର ବୃଦ୍ଧି ଓ ଔଜ୍ଜ୍ୱଲ୍ୟର କୌଣସି ସୀମା ନାହିଁ ।**

**ଦ୍ୱିତୀୟ ସତ୍ୟ :— ଯେଉଁ ତତ୍ତ୍ୱ ଜୀବନଶକ୍ତି ପ୍ରଦାନ କରୁଛି ତାହା ଆମ୍ଭମାନଙ୍କ ଅନ୍ତର ମଧ୍ୟରେ ଓ ବାହାରେ ପରିବ୍ୟାପ୍ତ । ଏହା ଅବିନଶ୍ୱର ଏବଂ ଚିରନ୍ତନ କଲ୍ୟାଣକାରୀ । ତାହାଙ୍କୁ ଦେଖି ହୁଏ ନାହିଁ, ଶୁଣି ହୁଏ ନାହିଁ ଏବଂ ଘ୍ରାଣ କରି ହୁଏ ନାହିଁ । କିନ୍ତୁ ଯେ ତାହାଙ୍କୁ ଜାଣିବାକୁ ଆକାଙ୍‌କ୍ଷା କରନ୍ତି ସେ ତାଙ୍କର ଅନୁଭୂତି ଲାଭ କରନ୍ତି ।**

**ତୃତୀୟ ସତ୍ୟ :—ପ୍ରତ୍ୟେକ ମନୁଷ୍ୟ ସମ୍ପୂର୍ଣ୍ଣ ରୂପେ ତାହାର ଭବିଷ୍ୟତର ନିୟନ୍ତା, ତାହାର ଜୀବନର ଦଣ୍ଡ ଓ ପୁରସ୍କାରର ପ୍ରଦାତା ।**

**ଏହି ସତ୍ୟଗୁଡ଼ିକ ଜୀବନ ପରି ମହାନ୍ ଏବଂ ସରଳ, ମାନବର ସରଳ ମନ ପରି ସହଜବୋଧ । ଯେଉଁମାନେ ଏହି ଜ୍ଞାନ ପାଇଁ ତୃଷିତ ସେମାନଙ୍କୁ ଏହା ଦାନ କର ।**

ଉପରୋକ୍ତ ସତ୍ୟଗୁଡ଼ିକୁ ସାଧାରଣ ଲୋକଙ୍କ ପାଇଁ ଗୋଟିଏ ସରଳ ଧର୍ମ ବୋଲି ବିବେଚନା କରା ଯାଇପାରେ । ପରଂବ୍ରହ୍ମ ଏକମାତ୍ର

ସତ୍ୟ । କିନ୍ତୁ ତାହାଙ୍କୁ କଳ୍ପନା କରିବା ମଧ୍ୟ ମାନବର କ୍ଷୁଦ୍ର ବୁଦ୍ଧିରେ ଅସମ୍ଭବ । ତେଣୁ ସାଧାରଣ ଲୋକ କେବଳ ଆପେକ୍ଷିକ ସତ୍ୟ **(relative truth)** ଜାଣିବା ସମ୍ଭବ । ସମସ୍ତ ଧର୍ମରେ ସାଧାରଣ ଲୋକଙ୍କ ପାଇଁ ଏକ ପ୍ରକାର ଶିକ୍ଷା ଓ ସାଧକମାନଙ୍କ ପାଇଁ ଅନ୍ୟ ସ୍ୱତନ୍ତ୍ର ଶିକ୍ଷାର ବ୍ୟବସ୍ଥା ଅଛି । ସାଧାରଣ ଲୋକ ଆଧ୍ୟାତ୍ମିକତାର ନିଗୂଢ଼ ତତ୍ତ୍ୱ ବୁଝିବାକୁ ସମର୍ଥ ହେବ ନାହିଁ । ସେମାନଙ୍କୁ ଧର୍ମର ନିଗୂଢ଼ ତତ୍ତ୍ୱ କୁହାଯାଏ ନାହିଁ । କହିଲେ ସେମାନେ ବୁଝି ପାରିବେ ନାହିଁ । ବିଶ୍ୱାସ କରିବେ ନାହିଁ ଏବଂ ହୁଏତ ତାଚ୍ଛଲ୍ୟ କରିବେ । ତାହାଦ୍ୱାରା ଲାଭ ପରିବର୍ତ୍ତେ କ୍ଷତି ହେବ ।

ବ୍ରହ୍ମବିଦ୍ୟାରେ କେତେକ ନିଗୂଢ଼ ବିଷୟ ଓ ତତ୍ତ୍ୱ ଅଛି ଯାହାକି କେବଳ ଶ୍ରଦ୍ଧା, ବିଶ୍ୱାସ ଓ ଅବିରତ ଚେଷ୍ଟା ଦ୍ୱାରା ବୁଝିହେବ । କେବଳ ଅଧିକାରୀଙ୍କୁ ସେସବୁ କୁହା ଯାଇପାରେ ।

**ଏହି ପ୍ରଥମ ଭାଗରେ ଦିଆ ଯାଇଥିବା ଉକ୍ତିଗୁଡ଼ିକ ଶିକ୍ଷା କକ୍ଷର କାନ୍ଥରେ ଲିପିବଦ୍ଧ ହୋଇଛି । ଯେଉଁମାନେ ଚାହିଁବେ ସେମାନେ ପାଇବେ । ଯେଉଁମାନେ ଅଧ୍ୟୟନ କରିବାକୁ ଚାହିଁବେ ସେମାନେ ଅଧ୍ୟୟନ କରିବେ । ଯେଉଁମାନେ ଶିକ୍ଷା କରିବାକୁ ଚାହିଁବେ ସେମାନେ ଶିକ୍ଷା କରିବେ ।**

**ଶାନ୍ତି ତୁମ ସହିତ ରହୁ ।**



## ଦ୍ୱିତୀୟ ଭାଗ

### ପ୍ରଥମ ଅଧ୍ୟାୟ—ପ୍ରାରମ୍ଭିକ କଥନ

ଏହି ଦ୍ୱିତୀୟ ଭାଗ ପ୍ରଥମ ଦୀକ୍ଷା ପ୍ରାପ୍ତ ବ୍ୟକ୍ତି ପାଇଁ ଉଦ୍ଦିଷ୍ଟ । କିନ୍ତୁ ଏଥିରେ ଉଚ୍ଚତର ଦୀକ୍ଷା ପ୍ରାପ୍ତି ପାଇଁ ଉପଯୋଗୀ ଉପଦେଶ ଅଛି । ସାଧକ ଏଥିରୁ ଯେତେ ଗ୍ରହଣ କରି ପାରିବ ସେତେ ଉପକୃତ ହେବ ।

ଆମ୍ଭମାନଙ୍କୁ ମୁଖ୍ୟତଃ ଦୁଇଟି ଉପଦେଶ ଦିଆ ଯାଇଛି । ପ୍ରଥମତଃ, ନିମ୍ନାତ୍ମାକୁ ଉଚ୍ଚାତ୍ମାଦ୍ୱାରା ନିୟନ୍ତ୍ରଣ କର, ଅର୍ଥାତ୍ ନିମ୍ନମାନସ—କାମ—ସ୍ଥୂଳ ଶରୀରଗୁଡ଼ିକୁ ଆତ୍ମା-ବୁଦ୍ଧି-ଉଚ୍ଚ ମାନସ ଦ୍ୱାରା ପରିଚାଳିତ କର । ଦ୍ୱିତୀୟତଃ, ଆତ୍ମା-ବୁଦ୍ଧି-ଉଚ୍ଚ ମାନସକୁ monad ଦ୍ୱାରା ପରିଚାଳିତ କର ।

**ଶାନ୍ତିର ନୀରବତା ମଧ୍ୟରୁ ଗୋଟିଏ ପ୍ରତିଧ୍ୱନି ଶୁଣାଯିବ । ଏହି ଧ୍ୱନି କହିବ : ତୁମର ପ୍ରଗତି ବାକି ଅଛି । ତୁମର ସାଧନାର ଫଳ ରୂପେ ତୁମେ ଏହି ସ୍ତରକୁ ଆସିଛ । ବର୍ତ୍ତମାନ ଉଚ୍ଚତର ସ୍ତରକୁ ଯିବାକୁ ସାଧନା କରିବା ଆବଶ୍ୟକ । ଏହି ଧ୍ୱନି ନୀରବତା ଜାଣି ତୁମେ ତାହାର ନିର୍ଦ୍ଦେଶ ପାଳନ କରିବ ।**

**ତୁମେ ବର୍ତ୍ତମାନ ଦୀକ୍ଷିତ (ଚେଲା) । ତୁମେ ଅଟଳ ସ୍ଥିତି ଲାଭ କରିଛ । ଶୁଣିବାର ଶକ୍ତି ପାଇଛ । ଦେଖିବାର ଶକ୍ତି ପାଇଛ । କହିବାର ଶକ୍ତି ପାଇଛ । ତୁମେ କାମ ଜୟ କରିଛ ଓ ଆତ୍ମଜ୍ଞାନ ଲାଭ କରିଛ । ତୁମେ ମୁକୁଳିତ ଆତ୍ମାକୁ ଦେଖିଛ ଓ ଜାଣିଛ । ତୁମେ ନୀରବ ବାଣୀ ଶୁଣିଛ । ଏବେ ଶିକ୍ଷାର ପ୍ରକୋଷ୍ଠକୁ ଯାଅ ଓ ସେଠାରେ ତୁମ ପାଇଁ କଅଣ ଲେଖା ହୋଇଛି ପାଠକର ।**

ଉପରୋକ୍ତ ଉକ୍ତି ମହାତ୍ମା ଭେନେସିଆନ୍ ଲେଖିଛନ୍ତି । ଅଦୃଶ୍ୟ ସ୍ତରରେ ଯାହା କୁହାଯାଏ ତାହା ଦୃଶ୍ୟ ସ୍ଥୂଳ ଜଗତରେ ଶୁଣାଯାଏ ନାହିଁ ।

ତେଣୁ ତାହା ନୀରବ ବାଣୀ । ସାଧକ ଯେତେ ଉଚ୍ଚ ସ୍ତରକୁ ଗଲେ ମଧ୍ୟ ଉଚ୍ଚତର ସ୍ତରରେ ବାଣୀ ତାହାପାଇଁ ନୀରବ ବାଣୀ । ଆତ୍ମା ସ୍ତରକୁ ଯିବା ପୂର୍ବରୁ ସେ ନୀରବ ବାଣୀ ଆତ୍ମା ସ୍ତରରୁ ଶୁଣେ । ଆତ୍ମା ସ୍ତରରେ ପହଞ୍ଚି ସେ କିଛି କାଳ ଶାନ୍ତ ଓ ଆନନ୍ଦରେ ବିଶ୍ରାମ ନେବା ପରେ **monad** ସ୍ତରରୁ ନୀରବ ବାଣୀ ଶୁଣେ । ସେ ଶୁଣେ ଯେ ସେ ତାହାର ସାଧନାର ଫଳ ପ୍ରାପ୍ତ ହୋଇଛି, କିନ୍ତୁ ତାହାକୁ ଆହୁରି ଆଗେଇବାକୁ ହେବ । ଏହି ନୀରବ ବାଣୀକୁ ପାଳନ କରି ସାଧକ ଉଚ୍ଚତର ସ୍ତରକୁ ଯିବାକୁ ସାଧନା କରେ ।

**ଅଟଳ ସ୍ଥିତି ଲାଭ କରିବା ଅର୍ଥ ଆତ୍ମ-ବିଶ୍ୱାସ ଲାଭ କରିବା ।**

ପ୍ରଥମ ଦୀକ୍ଷା ସମୟରେ ସାଧକ ବୁଦ୍ଧି ସ୍ତରକୁ ଅଳ୍ପକାଳ ଯାଇଥାଏ ଓ ସେଠାରେ ସେ ଏକ ଦିବ୍ୟ ଜୀବନର ଅନୁଭୂତି ଲାଭ କରିଥାଏ ।

**ଶୁଣିବାର ଶକ୍ତି ଲାଭ କରିବା ଅର୍ଥ ବୁଦ୍ଧି-ମାନସର ଶକ୍ତି ଲାଭ କରିବା ।**

ବୁଦ୍ଧି ମାନସର ଶକ୍ତି ଲାଭ କଲେ ସତ୍ୟ ଓ ମାୟା ମଧ୍ୟରେ ପାର୍ଥକ୍ୟ ଜାଣି ହୁଏ । ଏହାକୁ ମନୋଦ୍ୱାର ଉନ୍ମୋଚନ କୁହନ୍ତି । ବୁଦ୍ଧି ସ୍ତରରୁ ନିମ୍ନକୁ ଦେଖିଲେ ସବୁ ଭିନ୍ନ ଭିନ୍ନ ଦେଖାଯାଏ । ବୁଦ୍ଧି ସ୍ତରରେ ସମସ୍ତ ସ୍ଥିତିରେ ସମତା ଦେଖାଯାଏ ।

**ଦେଖିବାର ଶକ୍ତି ଲାଭ କରିବା ଅର୍ଥ ଉପଲବ୍ଧି କରିବା ଯେ ଯାହାକିଛି ଘଟୁଛି ତାହା ମଙ୍ଗଳପ୍ରଦ ।**

ନିମ୍ନ ସ୍ତରରେ ଅନେକ କିଛି ଦୁଃଖ-କଷ୍ଟଦାୟକ ଘଟଣା ଘଟେ ଓ ସେଥିରେ ଲୋକେ ଅଭିଭୂତ ହୋଇ ଯାଆନ୍ତି । ନିଜର ପ୍ରିୟଜନମାନଙ୍କ ଦୁଃଖ, କଷ୍ଟ ବା ମୃତ୍ୟୁ ଦେଖି ମ୍ରିୟମାଣ ହୁଅନ୍ତି । ସେମାନେ ବୁଝନ୍ତି ନାହିଁ ଯେ ଏ ସବୁ ସେମାନଙ୍କ ପ୍ରତି ଓ ଅନ୍ୟମାନଙ୍କ ପ୍ରତି ଆଧ୍ୟାତ୍ମିକ ଦୃଷ୍ଟିରେ ମଙ୍ଗଳପ୍ରଦ । ବୁଦ୍ଧି ସ୍ତରରୁ ଦେଖିଲେ ଏହା ଉପଲବ୍ଧ ହୁଏ ।

**କହିବାର ଶକ୍ତି ଲାଭ କରିବା ଅର୍ଥ ଅନ୍ୟମାନଙ୍କୁ ସାହାଯ୍ୟ କରି ପାରିବାର ଶକ୍ତି ।**

ସାଧକର ପ୍ରତ୍ୟକ୍ଷ ଜ୍ଞାନ ନ ଥାଏ କିମ୍ବା ଅତ୍ୟନ୍ତ କମ୍ ଥାଏ । କିନ୍ତୁ ତାହାର ପ୍ରତ୍ୟକ୍ଷ ଜ୍ଞାନ ଲାଭ କରିଥିବା ବ୍ୟକ୍ତିଙ୍କ ଉପରେ ବିଶ୍ୱାସ ଥାଏ ଓ ତାହାଙ୍କଠାରୁ ଯାହା ଶିକ୍ଷା କରିଥାଏ ସେଥିରେ ତାହାର ହୃଦ୍‌ବୋଧ ହୋଇଥାଏ । ଦୀକ୍ଷା ପ୍ରାପ୍ତ ହେଲେ ତାହାର ପ୍ରତ୍ୟକ୍ଷ ଜ୍ଞାନର ଆରମ୍ଭ ହୁଏ । ସାଧକ ହେଉ ବା ଦୀକ୍ଷିତ ହେଉ, ପ୍ରତ୍ୟକ୍ଷ ଜ୍ଞାନବାନ୍ ହେଉ ବା ପରୋକ୍ଷ ଜ୍ଞାନବାନ ହେଉ, ସେ ତାହାର ଜ୍ଞାନ ଅନ୍ୟମାନଙ୍କୁ ବିତରଣ କରିବା ଆବଶ୍ୟକ । ଜ୍ଞାନବାନ୍ ଲୋକ ସୁବକ୍ତା ହୋଇ ନପାରେ । ତଥାପି ଅନ୍ୟମାନଙ୍କୁ କହିବା ଦ୍ୱାରା ଲବ୍ଧ ଜ୍ଞାନ ବିତରଣ କରାଯାଇପାରେ ଓ କହିବାର ଶକ୍ତି ମଧ୍ୟ ହୁଏ । ଦୀକ୍ଷିତ ପ୍ରତ୍ୟକ୍ଷ ଜ୍ଞାନଲାଭ କରିଥିବାରୁ ତାହାର କହିବାରେ ଦୃଢ଼ତା ଓ ସ୍ପଷ୍ଟତା ଥାଏ ଓ ସେଥିପାଇଁ ସେ ଶ୍ରୋତାମାନଙ୍କୁ ଗଭୀର ଭାବେ ପ୍ରଭାବିତ କରିପାରେ । ସାଧକ ତାହା କରି ନ ପାରିଲେ ମଧ୍ୟ ନିଜର ଶକ୍ତି ଅନୁସାରେ ଲୋକଙ୍କୁ ଆଧ୍ୟାତ୍ମିକ ଶିକ୍ଷା ଦେବା ଉଚିତ । ଲୋକଙ୍କୁ ଆଧ୍ୟାତ୍ମିକ ଶିକ୍ଷା ଦେବା ସର୍ବୋଚ୍ଚ ପରୋପକାର ।

**କାମ ଜୟ କରିବାର ଅର୍ଥ ନିମ୍ନ-ମାନସ, କାମନା ଓ ସ୍ଥୂଳ ଶରୀରକୁ ନିଜର ନିୟନ୍ତ୍ରଣରେ ରଖିପାରିବାର ଶକ୍ତି ।**

Monadରୁ ଏକ ରଶ୍ମି ନିମ୍ନକୁ ଆସି ଆତ୍ମା ସ୍ତରରେ ତିନି ଭାଗରେ ବିଭକ୍ତ ହୁଏ, ଯାହାକୁ ଆତ୍ମା, ବୁଦ୍ଧି ଓ ମାନସ କୁହାଯାଏ । ମାନସ ଦୁଇ ଭାଗରେ ବିଭକ୍ତ ହୁଏ, ଯାହାକୁ ଉଚ୍ଚ ମାନସ ଓ ନିମ୍ନ ମାନସ କୁହାଯାଏ । ଆତ୍ମା, ବୁଦ୍ଧି ଓ ଉଚ୍ଚ ମାନସ ଆପେକ୍ଷିକ ଭାବେ ଅମର । ଏହାକୁ ଉଚ୍ଚ ଅହଂ (Higher-Self କିମ୍ବା Individuality) ଓ ନିମ୍ନ ମାନସ, କାମ ଓ ସ୍ଥୂଳ ଶରୀରକୁ ନିମ୍ନ ଅହଂ (Lower-Self କିମ୍ବା Personality) କୁହାଯାଏ । ନିମ୍ନ ଅହଂର ବାରମ୍ବାର ଜନ୍ମ ଓ ମୃତ୍ୟୁ ହୁଏ । କାମ ଜୟ କରିବାର ଅର୍ଥ ନିମ୍ନ ଅହଂକୁ ଉଚ୍ଚ ଅହଂ ନିୟନ୍ତ୍ରଣରେ ରଖିପାରିବାର ଶକ୍ତି ।

**ଆତ୍ମଜ୍ଞାନ ଲାଭ କରିବା ଅର୍ଥ ଚେତନା ଉଚ୍ଚ ଅହଂରେ ସ୍ଥିତି ଲାଭ କରିବା ଓ ସେହି ସ୍ତରରୁ ନିମ୍ନ ଅହଂକୁ ନିରପେକ୍ଷ ଭାବେ ଦେଖିବା ।**

ସିଦ୍ଧ ପୁରୁଷମାନେ ଏହା କରି ପାରନ୍ତି । ସେମାନେ ନିମ୍ନ ଅହଂକୁ ଜୟ କରିସାରିଛନ୍ତି । ତେଣୁ ସେମାନେ ତାଙ୍କର ନିମ୍ନ ଅହଂକୁ ଉଚ୍ଚ ଚେତନା ଦ୍ୱାରା ଗୃହୀତ କରିପାରନ୍ତି । ନିମ୍ନ ଅହଂର ପକ୍ଷପାତିତା ସେଥିରେ ନ ଥାଏ ।

**ମୁକୁଳିତ ଆତ୍ମାକୁ ଦେଖିବା ଅର୍ଥ ନିଜେ ବୁଦ୍ଧିସ୍ତରର ଚେତନା-ଦ୍ୱାରା ନିଜର ଆତ୍ମାକୁ ଦେଖିବା ଓ ଅନୁଭବ କରିବା ।**

ତିନୋଟି ପ୍ରତିବନ୍ଧକ (fetters) ଜୟ କଲେ ବୁଦ୍ଧି ସ୍ତରର ଚେତନା ଆସେ । ସେଗୁଡ଼ିକ ହେଲା ନିମ୍ନ ଅହଂ ଭାବ, ସନ୍ଦେହ ଓ କୁସଂସ୍କାର । ଦୀକ୍ଷା ପ୍ରାପ୍ତି ସମୟରେ ସାଧକ ଯେତେବେଳେ ଅଳ୍ପକ୍ଷଣପାଇଁ ବୁଦ୍ଧି ସ୍ତରକୁ ଯାଏ ସେତେବେଳେ ସେ ଏକ ନୂତନ ଜୀବନର ଅନୁଭୂତି ଲାଭ କରେ ଓ ଉକ୍ତ ପ୍ରତିବନ୍ଧକଗୁଡ଼ିକ ଲୋପ ପାଏ । ସେ ଅନ୍ୟମାନଙ୍କ-ଠାରୁ ନିଜକୁ ପୃଥକ୍ ମନେ କରେ ନାହିଁ । ପ୍ରତ୍ୟକ୍ଷ ଜ୍ଞାନ ଲାଭ ଦ୍ୱାରା ତାହାର ଅବଶିଷ୍ଟ ନିମ୍ନ ଅହଂଭାବ, ସନ୍ଦେହ ଓ କୁସଂସ୍କାର ଲୋପ ପାଏ । କର୍ମ ଓ ତାହାର ଫଳପ୍ରାପ୍ତି କିପରି ଓ କାହିଁକି ହୁଏ ତାହା ଦେଖେ, କ୍ରମ ବିକାଶର ଜ୍ଞାନ ଲାଭ କରେ ଓ ସମସ୍ତ କିଛି ମଙ୍ଗଳକାରୀ ବୋଲି ଜାଣିପାରେ ।

**ମୁକୁଳିତ ଆତ୍ମାକୁ ଜାଣିବା ଅର୍ଥ ଭୟଭୀତ ନ ହୋଇ, ପଛକୁ ନ ଫେରି, ଆତ୍ମାର ଜାଜ୍ୱଲ୍ୟମାନ ଆଲୋକ ସମ୍ମୁଖରେ ଆଖି ବନ୍ଦ ନ କରିବା । କେହି କେହି ସେହି ଜାଜ୍ୱଲ୍ୟମାନ ଆଲୋକର ସମ୍ମୁଖୀନ ହୋଇପାରନ୍ତି ନାହିଁ ଏବଂ ଜୟଲାଭ କରିବା ମୁହୂର୍ତ୍ତରେ ହାରି ଯାଆନ୍ତି ।**

ମାନବ ବହୁ କାଳ ତାହାର କାରଣ ଶରୀରରେ ଥାଏ । ମାନବ ବିକାଶ ସମ୍ପୂର୍ଣ୍ଣ ହେବା ପରେ ତାହାକୁ କାରଣ ଶରୀର ତ୍ୟାଗ କରି ବୁଦ୍ଧି ଶରୀରକୁ ଯିବାକୁ ହୁଏ । ବୁଦ୍ଧି ଶରୀରରେ ଯେତେବେଳେ ସେ ମୁକୁଳିତ ଆତ୍ମାର ଜାଜ୍ୱଲ୍ୟମାନ ଆଲୋକର ସମ୍ମୁଖୀନ ହୁଏ ସେତେବେଳେ ତାହାର ଭୟ ହୋଇପାରେ ଯେ ସେ ଆଲୋକରେ ମିଶିଯାଇ ତାହାର ଅସ୍ତିତ୍ୱ ହରାଇବ । ଏପରି ଭୟ ହେଲେ ଜୟ କରିବା ମୁହୂର୍ତ୍ତରେ ତାହାର ପତନ ହୁଏ ।

ସ୍ଥୂଳ ଦେହର ମରଣ ସହିତ ଏହାକୁ ତୁଳନା କରାଯାଇପାରେ । ଏକ ସମୟରେ ମରଣ ହେବ, ଏହା ସମସ୍ତେ ଜାଣନ୍ତି । ଜ୍ଞାନୀ ଲୋକ ଜାଣେ ଯେ ମରଣ କେବଳ ସ୍ଥୂଳ ଶରୀରର ହୁଏ । ତାହାଦ୍ୱାରା ନିମ୍ନ ବା ଉଚ୍ଚ ଅହଂର ବିନାଶ ହୁଏ ନାହିଁ । କେବଳ ଚେତନା ସ୍ଥୂଳ ଶରୀରରୁ ସୂକ୍ଷ୍ମ ଶରୀରକୁ ଚାଲିଯାଏ । ତଥାପି ଜ୍ଞାନୀଲୋକ ମରଣକୁ ଭୟ କରିପାରେ, କାରଣ ଯେଉଁ ସ୍ଥୂଳ ଶରୀରରେ ତାହାର ଚେତନା ଥିଲା ଓ ଯାହା ସହିତ ସେ ଅଭ୍ୟସ୍ତ, ତାହା ଲୋପ ପାଇଯିବ ।

ବୁଦ୍ଧି ଶରୀରକୁ ଚେତନା ଚାଲିଗଲେ କାରଣ ଶରୀର ଲୋପ ପାଏ । ମାନବ ବିକାଶ ସମ୍ପୂର୍ଣ୍ଣ କରିବା ପର୍ଯ୍ୟନ୍ତ ଜନ୍ମ ଜନ୍ମ କାଳ ଦୀକ୍ଷିତ କାରଣ ଶରୀର ସହିତ ସଂପୃକ୍ତ ଥିବା ହେତୁ ତାହା ତ୍ୟାଗ କରିବାରେ ତାହାର ଉପରୋକ୍ତ ଭୟ ଜାତ ହୋଇପାରେ । କିନ୍ତୁ ଦୀକ୍ଷିତ ଜାଣେ ଯେ ଭୟର କାରଣ ନାହିଁ । ତାହାର ଅସ୍ତିତ୍ୱ ଲୋପ ପାଇବ ନାହିଁ । ତେଣୁ, ଉକ୍ତ ପତନ କ୍ୱଚିତ୍ ହୁଏ ଏବଂ ପତନ ହେଲେ ମଧ୍ୟ ସମୟକ୍ରମେ ପୁନରୁତ୍ଥାନ ହୁଏ ।

**ନୀରବ ବାଣୀ ଶୁଣିବା ଅର୍ଥ ତୁମ ଅନ୍ତରରୁ ଯେଉଁ ନିର୍ଦ୍ଦେଶ ଆସୁଛି ତାହାକୁ ହିଁ ପଥପ୍ରଦର୍ଶକ ବିଚାର କରିବା । ଶିକ୍ଷାର ପ୍ରକୋଷ୍ଠକୁ ଯାଅ ଏବଂ ଏପରି ଅବସ୍ଥା ଲାଭ କର ଯାହା ଦ୍ୱାରା କି ଶିକ୍ଷା ସମ୍ଭବ ହେବ । ସେଠାରେ ତୁମପାଇଁ ଅନେକ ଉପଦେଶ ଜ୍ୱଳନ୍ତ ଅକ୍ଷରରେ ଲେଖାଅଛି ଯାହାକି ତୁମେ ସହଜରେ ପଢ଼ି ପାରିବ । ଶିଷ୍ୟ ଯେତେବେଳେ ପ୍ରସ୍ତୁତ ହୁଏ ମହାତ୍ମା ସେତେ-ବେଳେ ପ୍ରସ୍ତୁତ ଥାଆନ୍ତି ।**

ଭୁବଃ ଜଗତରେ ଅଧିକାଂଶ ଶିକ୍ଷା ଲାଭ କରାଯାଏ । ମାନସ ଜଗତରେ ମଧ୍ୟ ଶିକ୍ଷା ଲାଭ କରାଯାଏ । ମନୁଷ୍ୟ ନିଜେହିଁ ତାହାର ପଥ ପ୍ରଦର୍ଶକ । ସାଧାରଣ ଲୋକ ଅନ୍ତରର ନିର୍ଦ୍ଦେଶ ଶୁଣିପାରନ୍ତି ନାହିଁ ଓ ଶୁଣିଲେ ମଧ୍ୟ ବୁଝି କାର୍ଯ୍ୟରେ ଲଗାଇ ପାରନ୍ତି ନାହିଁ । ଦୀକ୍ଷିତ ଅନ୍ତରର ନୀରବ ବାଣୀ ଶୁଣେ, ବୁଝେ ଓ ସେହି ଅନୁସାରେ କାର୍ଯ୍ୟ କରେ । ଦୀକ୍ଷିତ ଭୁବଃ ଲୋକ ଓ ମାନସ ଲୋକରେ ଶିକ୍ଷା ପ୍ରକୋଷ୍ଠକୁ ଗଲେ

ସେଠାରେ ତାହାର ଉପଯୋଗୀ ଉପଦେଶ ଜ୍ୱଳନ୍ତ ଅକ୍ଷରରେ ଲେଖାଥିବା ଦେଖିବ ଓ ସହଜରେ ପଢ଼ି ପାରିବ ।

ପ୍ରକୋଷ୍ଠ ବୋଲି ଆମେ ଯାହା ବୁଝୁ, ସେପରି କୌଣସି ପ୍ରକୋଷ୍ଠ ଭୁବଃ ବା ମାନସ ଜଗତରେ ନାହିଁ । ସେହି ସବୁ ସୂକ୍ଷ୍ମ ଜଗତରେ ପ୍ରାର୍ଥିତ ଯେଉଁଠାରେ ଶିକ୍ଷା ଲାଭ କରେ ତାହାହିଁ ତାହାର ଶିକ୍ଷା ପ୍ରକୋଷ୍ଠ । ପ୍ରାର୍ଥିତ ପାଇଁ ଯେତେବେଳେ ଯେଉଁ ଶିକ୍ଷା ଉପଯୁକ୍ତ ସେତେବେଳେ ସେପରି ଶିକ୍ଷା ସେ ପାଏ । ସୂକ୍ଷ୍ମ ଜଗତର ସମସ୍ତ ଉପାଦାନ ଅଳ୍ପ ବେଶି ଜାଜ୍ୱଲ୍ୟମାନ । ତେଣୁ ଶିକ୍ଷା ଜ୍ୱଳନ୍ତ ଅକ୍ଷରରେ ଲେଖାଯାଇଛି ବୋଲି କୁହାଯାଇଛି ।

ସାଧକଙ୍କୁ ପ୍ରଥମେ ଶିକ୍ଷାନବିସ୍ ଭାବେ ଗ୍ରହଣ କରାଯାଇ ମହାତ୍ମାଙ୍କର କୌଣସି ଶିଷ୍ୟଙ୍କ ତତ୍ତ୍ୱାବଧାନରେ ରଖାଯାଏ । ଶିକ୍ଷାନବିସ୍ ଉପରେ ଦୃଷ୍ଟି ରଖାଯାଏ ଓ ତାହାର ପ୍ରଗତି ସମୀକ୍ଷା କରାଯାଏ । ତାହାକୁ କିଛି କାର୍ଯ୍ୟ କରିବାକୁ କୁହାଯାଏ ଓ ସେ କିପରି ସେ କାର୍ଯ୍ୟ ସମ୍ପନ୍ନ କରୁଛି ତାହା ଦେଖାଯାଏ । ଯୋଗ୍ୟ ବିବେଚନା କଲେ ତାହାକୁ ଅଧିକ କଷ୍ଟକର କାର୍ଯ୍ୟ ଦିଆଯାଏ । ଏସବୁ କାର୍ଯ୍ୟ କରିବାରେ ଶିକ୍ଷାନବିସ୍‌ର ଅନେକ ଶିକ୍ଷା ହୁଏ । ଯେତେବେଳେ ସେ ଦୀକ୍ଷା ପାଇବାକୁ ଉପଯୁକ୍ତ ହୁଏ ସେତେବେଳେ ତାହାର ଗୁରୁ ତାହାକୁ ଦୀକ୍ଷା ଦେବାକୁ ପ୍ରସ୍ତୁତ ଥାଆନ୍ତି ।

## ଦ୍ୱିତୀୟ ଅଧ୍ୟାୟ—୧ମ ରୁ ୪ର୍ଥ ଉକ୍ତି

ଏହି ଅଧ୍ୟାୟରେ ୧ମ ରୁ ୩ୟ ଉକ୍ତି ମୂଳ ଗ୍ରନ୍ଥରୁ ସଂଗୃହୀତ । ୪ର୍ଥ ଉକ୍ତି ମହାଚୌହାନଙ୍କର । ଏହି ୪ର୍ଥ ଉକ୍ତିକୁ ତିନିଭାଗ କରି ୧ମ ରୁ ୩ୟ ପ୍ରତ୍ୟେକ ଉକ୍ତି ପରେ ସଂଯୁକ୍ତ ଭାଗ ରୂପେ ଦିଆଯାଇଛି ।

**୧ । ଆଗାମୀ ସଂଗ୍ରାମରେ ପୃଥକ ରୁହ । ଯଦିଓ ସଂଗ୍ରାମ ତୁମ ଦ୍ୱାରା ସାଧିତ ହେବ, ସଂଗ୍ରାମ ତୁମର ନୁହେଁ ।**

**ଯେ ସଂଗ୍ରାମ କରୁଛି ସେ ତୁମ ଅନ୍ତରରେ ଅଛି । ତୁମେ ସୀମିତ, ତେଣୁ ଭୁଲ କରିପାର । ସେ ଅସୀମ ଓ ତାଙ୍କର ଭୁଲ ହୁଏନାହିଁ । ସେ ଚିରନ୍ତନ ସତ୍ୟ । ସେ ଯେତେବେଳେ ତୁମ ଅନ୍ତରରେ ପ୍ରବେଶ କରିଛନ୍ତି ଓ ସଂଗ୍ରାମ କରାଉଛନ୍ତି, ସେ ତୁମକୁ କଦାପି ଛାଡ଼ିଯିବେ ନାହିଁ । ଶାନ୍ତିର ମହାନ୍ ଦିବସରେ ସେ ତୁମ ସହିତ ଏକ ହୋଇଯିବେ ।**

ମାନବର ଆଧ୍ୟାତ୍ମିକ ବିକାଶ ପାଇଁ ସଂଗ୍ରାମ । Monadର ଏକ ରଶ୍ମି ନିମ୍ନ ସ୍ତରରେ ଆତ୍ମା, ବୁଦ୍ଧି ଓ ମାନସ ରୂପେ ପ୍ରକାଶ ପାଏ । ଏ ସଂଗ୍ରାମ monadର । ଆତ୍ମା, ବୁଦ୍ଧି, ମାନସ, କାମ ଓ ସ୍ଥୁଳ ଦେହକୁ ସେ ଅସ୍ତ୍ର ରୂପେ ବ୍ୟବହାର କରନ୍ତି । Monad ଚିରନ୍ତନ ସତ୍ୟ ହେଲେ ମଧ୍ୟ ତାହାର ନିମ୍ନ ସ୍ତରରେ ଅନୁଭୂତି ନିଜର ବିକାଶ ପାଇଁ ଆବଶ୍ୟକ । ଏହାହିଁ ସଂଗ୍ରାମର କାରଣ । ପ୍ରଥମେ ମାନବର ଆଧ୍ୟାତ୍ମିକ ବିକାଶ ପାଇଁ ସଂଗ୍ରାମ ହୁଏ ଯାହା ଦ୍ୱାରା କି ନିମ୍ନ ଅହଂ ଉଚ୍ଚ ଅହଂ ସହିତ ଏକ ହୁଏ । ପରେ ଉଚ୍ଚ ଅହଂର ବିକାଶ ପାଇଁ ସଂଗ୍ରାମ ହୁଏ ଯାହା ଦ୍ୱାରା କି ଉଚ୍ଚ ଅହଂ monad ସହିତ ଏକ ହୁଏ । ପ୍ରତ୍ୟେକ ସଂଗ୍ରାମ ଶେଷରେ ନିମ୍ନ ସତ୍ତା ଉଚ୍ଚ ସତ୍ତା ସହିତ ଏକ ହୋଇ ଶାନ୍ତି ଲାଭ କରେ ।

**୨ । ଯେ ସଂଗ୍ରାମ କରୁଛନ୍ତି ତାହାଙ୍କୁ ଦୃଷ୍ଟିରେ ରଖ ଏବଂ ତାହାଙ୍କୁ ତୁମ ମାଧ୍ୟମରେ ସଂଗ୍ରାମ କରିବାକୁ ଦିଅ ।**

**ଯେ ସଂଗ୍ରାମ କରୁଛନ୍ତି ତାହାଙ୍କୁ ଦୃଷ୍ଟିରେ ରଖ, କାରଣ ସଂଗ୍ରାମର ଚଞ୍ଚଳତା ମଧ୍ୟରେ ତୁମେ ତାହାଙ୍କୁ ଅତିକ୍ରମ କରି ଯାଇ-ପାର । ତୁମେ ତାହାଙ୍କୁ ନ ଜାଣିଲେ ସେ ତୁମକୁ ଜାଣିବେ ନାହିଁ । ତୁମର ଡାକ ଶୁଣିଲେ ସେ ତୁମ ଅନ୍ତରରେ ଆଇ ସଂଗ୍ରାମ କରିବେ ଓ ତୁମର ଅନ୍ତରର ଶୂନ୍ୟ ସ୍ଥାନ ପୂରଣ କରିବେ । ପରି ହେଲେ ତୁମେ ବିବ୍ରତ ନହୋଇ ଶାନ୍ତ ଅବସ୍ଥାରେ ସଂଗ୍ରାମରୁ ପୃଥକ ରହି ତାହାଙ୍କୁ ସଂଗ୍ରାମ କରିବାକୁ ଛାଡ଼ିଦେବ । ତାହାହେଲେ ତୁମେ କୌଣସି ଭୁଲ କରିବା ସମ୍ଭବ ହେବ ନାହିଁ ।**

ଯେ ସଂଗ୍ରାମ କରୁଛନ୍ତି ସେ monad । ତାଙ୍କର ଗୋଟିଏ ରଶ୍ମି ଉଚ୍ଚ ଅହଂ ରୂପେ ପ୍ରକାଶ ପାଏ । ଏହି ଉଚ୍ଚ ଅହଂ ନିମ୍ନ ଅହଂ ଜରିଆରେ **monad** ପାଇଁ ଅନୁଭୂତି ସଂଗ୍ରହ କରେ ଓ ସେଥିପାଇଁ ବାରମ୍ବାର ପୃଥିବୀରେ ଜନ୍ମ ଗ୍ରହଣ କରେ । ପୃଥିବୀ କର୍ମର ସ୍ଥାନ । ଏଠାରେ ଯେଉଁ ଅନୁଭୂତି ହୁଏ ତାହା ସ୍ପଷ୍ଟ ଜ୍ଞାନ ଓ କର୍ମ କୁଶଳତା ଆଣିଦିଏ । **Monad**ର ଉତ୍ତରୋତ୍ତର ଆଧ୍ୟାତ୍ମିକ ପ୍ରଗତି କେବଳ ନିମ୍ନ ଅହଂ ଜରିଆରେ ହୋଇପାରେ । **Monad**ର ବିକାଶର ଅନ୍ତ ନାହିଁ । ସମସ୍ତ ବିକାଶର ଶକ୍ତି ତାହାଠାରେ ସୁପ୍ତ ଅବସ୍ଥାରେ ଅଛି । ତାହାର ଶକ୍ତି ମୁକୁଳିତ କରିବାକୁ ସେ ଉଚ୍ଚ ଓ ନିମ୍ନ ଅହଂକୁ ବ୍ୟବହାର କରୁଛି । ତେଣୁ କର୍ମ ଜଗତରେ ଯେଉଁ ସଂଗ୍ରାମ ହେଉଛି ତାହା monadର । ନିମ୍ନ ଅହଂ ଏ ବିଷୟରେ ସଚେତନ ରହି ସଂଗ୍ରାମ କରିବା ଆବଶ୍ୟକ । ଏ ସଂଗ୍ରାମରେ ସେ ଉଚ୍ଚ ଅହଂର ନିର୍ଦ୍ଦେଶ ପ୍ରତି ସର୍ବଦା ଧ୍ୟାନ ଦେବା ଦରକାର । ଯେଉଁ ଲୋକ ସେ ନିର୍ଦ୍ଦେଶ ଗୃହେଁ ତାହା ସେ ପାଏ । ତାହାର ପରିପୂର୍ଣ୍ଣତା ଆସେ ଓ ସଂଗ୍ରାମରେ ତାହାର ଭୂମିକା କ'ଣ ତାହା ଜାଣି ସେ ସଂଗ୍ରାମକୁ ଉଚ୍ଚ ଅହଂ ଦ୍ୱାରା ପରିଚାଳିତ ହେବାକୁ ଛାଡ଼ିଦିଏ । ଏପରି କଲେ ଜୀବନ ସଂଗ୍ରାମରେ ନିମ୍ନ ଅହଂ ଏହି ସଂଗ୍ରାମ ତାହାର ଭାବି ଉଚ୍ଚ ଅହଂକୁ ଅତିକ୍ରମ କରିଯାଏ ନାହିଁ । ତେଣୁ କୌଣସି ଭୁଲ କରିବା ସମ୍ଭବ ହୁଏ ନାହିଁ ।

**Monad** ଓ ତାହାର ରଶ୍ମି ଆତ୍ମା-ବୁଦ୍ଧି-ମାନସ ସର୍ବ-ଶକ୍ତିମାନ ହେଲେ ମଧ୍ୟ ତାହା ଅସ୍ପଷ୍ଟତାର ଆବରଣରେ ସୁପ୍ତ । ମୁକୁଳିତ

ହେବାପାଇଁ ନିମ୍ନ ସ୍ତରରେ ସ୍ପଷ୍ଟତା ଓ କର୍ମ କୁଶଳତା ତାହାର ଆବଶ୍ୟକ । ପ୍ରତ୍ୟେକ ଜନ୍ମରେ ଯେଉଁ ଅନୁଭୂତି ମିଳେ ତାହା ମୃତ୍ୟୁ ପରେ ଉଚ୍ଚ ମାନସ ସ୍ତରରେ ଥିବା କାରଣ ଶରୀରକୁ ଚାଲିଯାଏ ଓ ସେଠାରେ କାର୍ଯ୍ୟକାରୀ ଶକ୍ତିରେ ରୂପାୟିତ ହୋଇ କାରଣ ଶରୀରର ଉପାଦାନରେ ମିଶିଯାଏ । ଏହିପରି ବାରମ୍ବାର ସ୍ପଷ୍ଟ ଜ୍ଞାନ ଓ କାର୍ଯ୍ୟକାରୀ ଶକ୍ତି ଆହରଣ କରି କାରଣ ଶରୀର ଯେତେବେଳେ ସମ୍ପୂର୍ଣ୍ଣ ବିକଶିତ ହୁଏ, ସେତେବେଳେ ନିମ୍ନ ସ୍ତରର ସଂଗ୍ରାମର ଆଉ ଆବଶ୍ୟକତା ନ ଥାଏ । ଉଚ୍ଚ ଅହଂ ଓ ନିମ୍ନ ଅହଂ ଏକ ହୋଇଯାଏ । **Monad** ପ୍ରଥମ ସଂଗ୍ରାମରେ ଜୟ ଲାଭ କରେ । ଏହାର ପର ସଂଗ୍ରାମରେ ଉଚ୍ଚ ଅହଂ **monad** ସହିତ ଏକ ହୋଇଯାଏ ।

**ଉଚ୍ଚ ଅହଂ ପ୍ରତି ଦୃଷ୍ଟି ନ ରଖି ତୁମେ ତାହାକୁ ଅତିକ୍ରମ କରିଗଲେ ତୁମେ (ନିମ୍ନ ଅହଂ) ରକ୍ଷକବିହୀନ ହୋଇଯିବ । ତୁମର ମସ୍ତିଷ୍କ ଆନ୍ଦୋଳିତ ହେବ, ହୃଦୟ ଅସ୍ଥିର ହେବ ଓ ସଂଗ୍ରାମ କ୍ଷେତ୍ରର ଧୂଳିରେ ତୁମେ ଦୃଷ୍ଟି ଓ ଅନ୍ୟାନ୍ୟ ଇନ୍ଦ୍ରିୟବୋଧ ହରାଇବ । ତୁମର ମିତ୍ର କିଏ ଓ ଶତ୍ରୁ କିଏ ଜାଣିପାରିବ ନାହିଁ ।**

ଉଚ୍ଚ ଅହଂକୁ ଉପେକ୍ଷା କରି ନିମ୍ନ ଅହଂ ନିଜର ପ୍ରାଧାନ୍ୟ ବିସ୍ତାର କଲେ ମନୁଷ୍ୟ କାମ, କ୍ରୋଧ ଇତ୍ୟାଦି ଷଡ଼ରିପୁମାନଙ୍କ କବଳରେ ପଡ଼ିବ ଓ ଉଚ୍ଚ ଅହଂର ଆଶ୍ରୟ ହରାଇବ । ଏହି ରିପୁମାନେ ତାହାର ମନ ଆନ୍ଦୋଳିତ କରିବେ ଓ ହୃଦୟ ଅସ୍ଥିର କରିବେ । ଜୀବନ ସଂଗ୍ରାମରେ ସେ ନିଜର ବାସ୍ତବ ଇନ୍ଦ୍ରିୟବୋଧ ହରାଇବ । ରିପୁମାନଙ୍କୁ ମିତ୍ର ବୋଲି ଭାବିବ ଓ ପ୍ରକୃତ ମିତ୍ରକୁ ଚିହ୍ନିବ ନାହିଁ ।

ସାଧାରଣ ଲୋକର ଜୀବନରେ ଏହା ସର୍ବଦା ଘଟୁଥାଏ । କାମ, କ୍ରୋଧ, ଲୋଭ, ମୋହ ବା ଆସକ୍ତି, ମଦ ବା ଅହଂକାର ଓ ମାତ୍ସର୍ଯ୍ୟ ବା ଈର୍ଷା ମନୁଷ୍ୟର ଛଅଟି ରିପୁ ବା ଶତ୍ରୁ । ସାଧାରଣ ଲୋକ ଏମାନଙ୍କ କବଳରେ ରହି ବିବେକ ବୁଦ୍ଧି ହରାଇଥାଏ ଓ ନାନାଦି ଅପକର୍ମରେ ଲିପ୍ତ ଥାଏ । ଏପରି ଅବସ୍ଥାରେ ଉଚ୍ଚ ଅହଂ ନିରୁପାୟ ହୋଇଯାଏ ଓ ନିମ୍ନ ଅହଂ ରକ୍ଷକବିହୀନ ହୋଇଯାଏ । ନିମ୍ନ ଅହଂ ପ୍ରାଧାନ୍ୟ ଲାଭ କରିବାରୁ

ଯାହା ଅନୁଚିତ, ଅସତ୍ ଓ ଆଧ୍ୟାତ୍ମିକତାର ପ୍ରତିବନ୍ଧକ ତାହାକୁ ସେ ଗ୍ରହଣ କରେ ଓ ସତ୍ସଙ୍ଗ, ସଦ୍‌ଗୁଣ ବର୍ଜନ କରେ, ଯାହାକି ତାହାର ମିତ୍ର । ଏହି ରିପୁମାନଙ୍କ ପ୍ରଭାବ ଏତେ ଶକ୍ତିଶାଳୀ ଯେ ଦୀକ୍ଷିତଙ୍କୁ ମଧ୍ୟ ଚେତାଇ ଦିଆଯାଉଛି ଯେ ସେ monad ଓ ଉଚ୍ଚ ଅହଂକୁ ଦୃଷ୍ଟିରେ ରଖୁ ଓ ଅତିକ୍ରମ ନ କରୁ ।

**୩ । ସଂଗ୍ରାମରେ ଉଚ୍ଚ ଶକ୍ତିର ଆଦେଶ ପାଳନ କର ।**

**ସେ ତୁମର ସେନାପତି ନୁହନ୍ତି । ସେ ତୁମେ ନିଜେ ଉଚ୍ଚ ଅହଂ । ସେ ଯାହା କୁହନ୍ତି ତାହା ହିଁ ତୁମର ଅନ୍ତରର କାମନା, କାରଣ ସେ ବାସ୍ତବିକ ତୁମେ, କିନ୍ତୁ ତୁମଠାରୁ ବହୁତ ବେଶୀ ପ୍ରଜ୍ଞାବାନ୍ ଓ ଶକ୍ତିଶାଳୀ ।**

ଜୀବନ ସଂଗ୍ରାମରେ ମନୁଷ୍ୟ ତାହାର ଉଚ୍ଚ ଅହଂ ସହିତ ସହ-ଯୋଗ କରିବା ଆବଶ୍ୟକ । ଉଚ୍ଚ ଅହଂକୁ ଅବହେଳା କରି ନିମ୍ନ ଅହଂକୁ ପ୍ରାଧାନ୍ୟ ଦେବା ବିପଦସଂକୁଳ ।

## ତୃତୀୟ ଅଧ୍ୟାୟ—୫ମ ରୁ ୮ମ ଉକ୍ତି

ଏହି ଅଧ୍ୟାୟର ୫ମ ରୁ ୭ମ ଉକ୍ତି ମୂଳ ଗ୍ରନ୍ଥରୁ ସଂଗୃହୀତ । ୮ମ ଉକ୍ତି ମହାତ୍ମାହିଲାରିଅନ୍‌ଙ୍କର । ଏହି ୮ମ ଉକ୍ତିକୁ ତିନି ଭାଗ କରି ୫ମ ରୁ ୭ମ ପ୍ରତ୍ୟେକ ଉକ୍ତି ପରେ ସଂପୃକ୍ତ ଭାଗ ରୂପେ ଦିଆଯାଇଅଛି ।

### ୫ । ଜୀବନର ସଂଗୀତ ଶୁଣ

**ଜୀବନର ସ୍ୱର ଅଛି । ତାହା ନୀରବ ନୁହେଁ । ସେ ସ୍ୱର ତୁମେ ଶୁଣିପାରୁ ନ ଥିଲେ ତାହା ତୁମକୁ ଏକ ଆର୍ତ୍ତନାଦ ପରି ଜଣାଯିବ, କିନ୍ତୁ ଏହା ଏକ ସଙ୍ଗୀତ । ଏଥିରୁ ତୁମେ ଶିକ୍ଷା ଲାଭ କର ଯେ ତୁମେ ଏକ ମହାନ୍ ସୁସଙ୍ଗତିର ଅଂଶ । ସେହି ସୁସଙ୍ଗତି (harmony) ନିୟମାବଳୀକୁ ପାଳନ କରିବାକୁ ଶିକ୍ଷା କର ।**

ଏ ସମ୍ପର୍କରେ ମହାତ୍ମା ହିଲାରିଅନ୍ ଏକ ବିସ୍ତୃତ ଟିପ୍ପଣୀ ଦେଇଛନ୍ତି । ତାହାକୁ ଭାଗ ଭାଗ କରି ଦିଆଗଲା ।

**ଜୀବନର ସଙ୍ଗୀତକୁ ପ୍ରଥମେ ନିଜର ହୃଦୟରେ ଶୁଣ । ତୁମେ କହିପାର ଯେ, କୌଣସି ସଙ୍ଗୀତ ତୁମେ ଶୁଣି ପାରୁ ନାହଁ, କେବଳ ଅସଙ୍ଗତି ଦେଖୁଛ । ଗଭୀର ଭାବେ ଦେଖ । ତଥାପି ଯଦି ତୁମେ ନିରାଶ ହେଉଛ, ସାମାନ୍ୟ ଅପେକ୍ଷା କରି ପୁଣି ଗଭୀରତମ ଭାବେ ଦେଖ । ପ୍ରତ୍ୟେକ ମନୁଷ୍ୟ ହୃଦୟରେ ଗୋଟିଏ ପ୍ରାକୃତିକ ଗୂଢ଼ ସଙ୍ଗୀତର ଉତ୍ସ ଅଛି । ଏହା ଲୁକ୍କାୟିତ ଓ ନୀରବ ଅବସ୍ଥାରେ ଥାଇପାରେ—କିନ୍ତୁ ଏହା ଅଛି । ତୁମର ପ୍ରକୃତିର ମୂଳରେ ତୁମେ ବିଶ୍ୱାସ, ଆଶା ଓ ପ୍ରେମ ପାଇବ ।**

ପ୍ରତ୍ୟେକ ମନୁଷ୍ୟର ଅନ୍ତରରେ monadର ରଶ୍ମି ଆତ୍ମା ରୂପେ ଅବସ୍ଥାନ କରୁଛି । ମନୁଷ୍ୟର ନିମ୍ନ ଅହଂ ଯେତେ ଇନ୍ଦ୍ରିୟାଭିମୁଖୀ ହେଲେ ମଧ୍ୟ ତାହା ଆତ୍ମାକୁ ସ୍ପର୍ଶ କରେ ନାହିଁ । ଆତ୍ମା ସର୍ବଦା ସତ୍, ଚିତ୍ ଓ ଆନନ୍ଦ ଅବସ୍ଥାରେ ଥାଏ । ଆତ୍ମାର ନିର୍ଦ୍ଦେଶ ସର୍ବଦା ଆସେ । ନିମ୍ନ ଅହଂ ଜୀବନ ସଂଗ୍ରାମରେ ଲିପ୍ତ ଥିବା ସମୟରେ ଆତ୍ମହରା ହୋଇ ସେ ନିର୍ଦ୍ଦେଶ ଶୁଣିପାରେ ନାହିଁ । ତେଣୁ ଅନେକ ଭୁଲ ଭ୍ରାନ୍ତି କରେ । ଜୀବନ ତାହାକୁ ଏକ ବେସୁରା ଆର୍ତ୍ତନାଦ ପରି ଶୁଭେ । ଯଦି ସେ ଆତ୍ମାର ନିର୍ଦ୍ଦେଶ ଶୁଣନ୍ତା ଓ ନିର୍ଲିପ୍ତ ଭାବରେ ପାଳନ କରନ୍ତା ତାହାହେଲେ ସେ ଜୀବନର ସୁସଙ୍ଗତି ଜାଣନ୍ତା ଓ ତାହା ହିଁ ଜୀବନର ସଙ୍ଗୀତ ।

ପ୍ରତ୍ୟେକ ମନୁଷ୍ୟ ହୃଦୟରେ ଈଶ୍ୱର ବିଶ୍ୱାସ ଅଛି, ଆଧ୍ୟାତ୍ମିକ ପ୍ରଗତିର ଆଶା ଅଛି ଓ ସାର୍ବଜନୀନ ପ୍ରେମ ଅଛି । ଏହା ସହିତ ସଂପୃକ୍ତ ହେବା ଆବଶ୍ୟକ । ସର୍ବୋଚ୍ଚ ଏକ ଶକ୍ତି ଅଛି, ଯାହାକି ସବୁକିଛି ନିୟନ୍ତ୍ରଣ କରୁଛି । ତାହାଙ୍କୁ ଈଶ୍ୱର ବା ଅନ୍ୟ କୌଣସି ନାମ ଦିଆଯାଇପାରେ, କାରଣ ତାଙ୍କର ନାମ ନାହିଁ । ତାଙ୍କର ଏକ ରଶ୍ମି monad ଓ monadର ଏକ ରଶ୍ମି ଆତ୍ମା । ବିକଶିତ ହେବାକୁ ଆତ୍ମା ମନୁଷ୍ୟ ହୃଦୟରେ ଅଛି । ସମସ୍ତ ଆତ୍ମାର ଉତ୍ସ ଏକ ହୋଇଥିବାରୁ ଆତ୍ମାର ସାର୍ବଜନୀନ ବନ୍ଧନ ବା ପ୍ରେମ ଅଛି । ଏହାକୁ ଯେ ଜାଣିଛି ସେ ଜୀବନର ସଙ୍ଗୀତ ଶୁଣିଛି ।

**ଯେ ଅସତ୍ ପନ୍ଥା ଗ୍ରହଣ କରିଛି ସେ ନିଜ ଅନ୍ତରକୁ ଦୃଷ୍ଟି ଦେବାକୁ ଅଗ୍ରାହ୍ୟ କରିଛି, ତାହାର ହୃଦୟର ମଧୁର ଧ୍ୱନି ପ୍ରତି କାନ ବନ୍ଦ କରିଛି, ଆତ୍ମାର ଆଲୋକ ପ୍ରତି ଚକ୍ଷୁ ବନ୍ଦ କରିଛି । କାମନା ସଂପୃକ୍ତ ଜୀବନ ତାହା ପାଇଁ ସହଜ ହୋଇଥିବାରୁ ସେ ଏପରି କରିଛି । କିନ୍ତୁ ଅନ୍ତରରେ ଥିବା ଜୀବନର ପ୍ରଖର ସ୍ରୋତକୁ ପ୍ରତିହତ କରି ହେବ ନାହିଁ । ଜୀବନର ଜଳରାଶି ଅନ୍ତରରେ ଅଛି । ସେହି ଜଳରାଶିକୁ ଦେଖ । ସେଥିରେ ତୁମେ ଅତ୍ୟନ୍ତ ଦୁରାଚାରୀ, ଅତ୍ୟାଚାରୀ ପାଷଣ୍ଡକୁ ମଧ୍ୟ ଦେଖିବ ।**

ମାନବ ବିକାଶର ବର୍ତ୍ତମାନ ଅବସ୍ଥାରେ ଅନେକ ମନୁଷ୍ୟ ବିକାଶର ବହୁ ନିମ୍ନ ପାବଚ୍ଛରେ ଅଛନ୍ତି । ଆଧ୍ୟାତ୍ମିକତା ସେମାନଙ୍କୁ ପ୍ରଭାବିତ କର-

ପାର ନାହିଁ । ସେମାନେ କାମନା ଚରିତାର୍ଥ ଓ ଇନ୍ଦ୍ରିୟ ସମ୍ଭୋଗରେ ସହଜ ଜୀବନଯାପନ କରିବାକୁ ଶ୍ରେୟ ମନେ କରୁଛନ୍ତି । ଏପରି ଲୋକ କ୍ଷମତାକୁ ଆସିଲେ ନିଜେ ଅନେକ ଅସତ୍ କାର୍ଯ୍ୟ କରେ ଓ ଅନ୍ୟମାନଙ୍କୁ କରିବାକୁ ପ୍ରଭାବିତ କରେ । ଆଧ୍ୟାତ୍ମିକ ଦୃଷ୍ଟିରେ ସେ ନିଜ ଉପରକୁ ବହୁତ ବିପଦ ଟାଣିଆଣେ । ଆହୁରି ନିମ୍ନ ସ୍ତରରେ ପେଷାଦାର ଅପରାଧୀଗଣ ଅଛନ୍ତି ଯେଉଁମାନେ କି ସମସ୍ତ ପ୍ରକାର କୁତ୍ସିତ ଓ ଭୟଙ୍କର କାର୍ଯ୍ୟରେ ଲିପ୍ତ ରୁହନ୍ତି । ଏହି ନିମ୍ନ ପାବଚ୍ଛରେ ଥିବା ଲୋକମାନେ ଅସତ୍ ପନ୍ଥା ଗ୍ରହଣ କରିଛନ୍ତି, ନିଜର ଅନ୍ତରକୁ ଦୃଷ୍ଟି ଦେଇନାହାନ୍ତି ଓ ଆଲୋକ ଦେଖି-ନାହାନ୍ତି । ତଥାପି ସେମାନେ ମନୁଷ୍ୟ ଓ ସମସ୍ତ ମନୁଷ୍ୟଙ୍କର ଆତ୍ମାର ଉତ୍ସ ଏକ । ସେମାନେ ତାହାଙ୍କର ଆତ୍ମାର ପ୍ରଖର ସ୍ରୋତକୁ ସବୁକାଳେ ପ୍ରତିହତ କରିପାରିବେ ନାହିଁ । ସମୟ ଆସିବ ଯେତେବେଳେ ଏହି ନିମ୍ନ ପାବଚ୍ଛର ଲୋକମାନେ କାମନା ଓ ଇନ୍ଦ୍ରିୟ ସମ୍ଭୋଗଜନିତ ବହୁ ଦୁଃଖ କଷ୍ଟ ପାଇଁ ତାଙ୍କର ଅସତ୍ ପନ୍ଥା ତ୍ୟାଗ କରିବେ । ଅପରାଧୀ ବହୁ ଯାତନା ଭୋଗ କରି କୁକର୍ମରୁ ନିବୃତ୍ତ ହେବ । ସେତେବେଳେ ସେମାନେ ଆଧ୍ୟାତ୍ମିକ ଜୀବନ ପାଇଁ ବ୍ୟାକୁଳ ହେବେ ଓ କ୍ରମଶଃ ସତ୍ ମାର୍ଗକୁ ଅନୁସରଣ କରିବେ । ଯେଉଁମାନେ ଆପେକ୍ଷିକ ଉଚ୍ଚ ପାବଚ୍ଛରେ ଅଛନ୍ତି, ସେମାନେ ନିମ୍ନ ପାବଚ୍ଛରେ ଥିବା ଲୋକଙ୍କୁ ନିଜର ଶକ୍ତି ଅନୁସାରେ ସାହାଯ୍ୟ କରିବା ଉଚିତ । ସତ୍ ମାର୍ଗରେ ସ୍ୱାର୍ଥପରତାର ସ୍ଥାନ ନାହିଁ । ତେଣୁ ଯେଉଁମାନେ ସତ୍ ମାର୍ଗ ଅନୁସରଣ କରୁଛନ୍ତି ସେମାନେ ଅନ୍ୟ-ମାନଙ୍କୁ ସେହି ମାର୍ଗ ଅନୁସରଣ କରିବାକୁ ସାହାଯ୍ୟ କରିବା ଉଚିତ୍ । ଯେଉଁଠାରେ ସାହାଯ୍ୟ କରିବା ସମ୍ଭବ ନୁହେଁ, ସେପରି ସ୍ଥଳେ ସୁଯୋଗ ପାଇଁ ଅପେକ୍ଷା କରିବା ଉଚିତ୍ ।

**ତୁମେ ଯେଉଁମାନଙ୍କ ମଧ୍ୟରେ ରହି ସଂଗ୍ରାମ କରୁଛ ସେମାନେ ସମସ୍ତେ ପରମେଶ୍ୱରଙ୍କର ଗୋଟିଏ ଗୋଟିଏ ଅଂଶ । ତୁମେ ଏପରି ମାୟା ମଧ୍ୟରେ ଅଛ ଯେଉଁଠାରେ ତୁମେ ଅନ୍ୟ-ମାନଙ୍କ ଆତ୍ମାର ସୁମଧୁର ବାଣୀ ଶୁଣିବା କଳ୍ପନା କରି ପାରିବ ନାହିଁ । କିନ୍ତୁ ତୁମେ ନିଜର ଆତ୍ମାକୁ ଚିହ୍ନ । ତାହାହେଲେ ତୁମେ ଅନ୍ୟମାନଙ୍କ ଆତ୍ମାକୁ ଚିହ୍ନିବ ।**

ଚେତନା ବୁଦ୍ଧି ସ୍ତରକୁ ଗଲେ ସମସ୍ତ ଆତ୍ମା ଏକ ବୋଲି ପ୍ରତ୍ୟକ୍ଷ ଜ୍ଞାନ ହୁଏ । କିନ୍ତୁ ଶିକ୍ଷିତ ବୁଦ୍ଧି ସ୍ତରକୁ ସ୍ପର୍ଶ କରିଥିଲେ ମଧ୍ୟ ପୃଥିବୀରେ ଅନ୍ୟମାନଙ୍କ ସହିତ ମାୟା ମଧ୍ୟରେ ଥାଏ । ତେଣୁ ତାହାକୁ ସତର୍କ କରି ଦିଆଯାଉଛି, ଏହି ମାୟା ଜାଲରେ ସେ ଅନ୍ୟମାନଙ୍କ ଆତ୍ମାର ବାଣୀ ଶୁଣିପାରିବ ନାହିଁ । ପ୍ରଥମେ ସେ ନିଜ ଆତ୍ମାର ବାଣୀ ଶୁଣୁ, ନିଜ ଆତ୍ମାକୁ ଜାଣୁ । ତାହାହେଲେ ସେ ଅନ୍ୟମାନଙ୍କ ଆତ୍ମାକୁ ଜାଣିବ ।

ପ୍ରତ୍ୟେକ ମନୁଷ୍ୟ ଏକ ମହାନ୍ ସୁସଙ୍ଗତିର ଅଂଶ । ଏହି ସୁସଙ୍ଗତିର ନିୟମାବଳୀ ଅଛି । ସୁସଙ୍ଗତିର ନିୟମାବଳୀ ଅନୁସାରେ ସୃଷ୍ଟି ଓ ସୃଷ୍ଟିର ଅନ୍ତର୍ଗତ ସବୁକିଛିର ବିକାଶ ଯୋଜନା କାର୍ଯ୍ୟକାରୀ ହେଉଛି । ପ୍ରତ୍ୟେକ ମନୁଷ୍ୟ ଏହି ନିୟମାବଳୀକୁ ପାଳନ କରିବା ଉଚିତ୍ । ବିଭିନ୍ନ ଧର୍ମଗୁଡ଼ିକର ସାରକଥାରେ ସାଧାରଣ ଲୋକମାନଙ୍କ ପାଇଁ ପ୍ରଯୁଜ୍ୟ ଏହି ନିୟମାବଳୀର ଅନେକ ସୂତ୍ର ଦିଆଯାଇଛି । ସବୁ ଧର୍ମରେ ଆଧ୍ୟାତ୍ମିକ ପ୍ରଗତି ପାଇଁ ଏକ ପ୍ରକାର ସାର ଉପଦେଶ ଦିଆଯାଇଛି ; ଯଥା: ଉଦାର ହୃଦୟବାନ୍ ହୁଅ, ନିଃସ୍ୱାର୍ଥପର ହୁଅ, ଦୟାବନ୍ତ ହୁଅ, କ୍ଷମାଶୀଳ ହୁଅ, ପରୋପକାର କର, ସତ୍ୟବାନ୍ ହୁଅ, ନ୍ୟାୟବାନ୍ ହୁଅ, କର୍ତ୍ତବ୍ୟପରାୟଣ ହୁଅ, ଈଶ୍ୱରବିଶ୍ୱାସୀ ହୁଅ ଇତ୍ୟାଦି । ସାଧକ ପାଇଁ ଏହା ସହିତ ଅନ୍ୟ ଉପଦେଶମାନ ଅଛି । ଶିକ୍ଷିତ ପାଇଁ ଗୁପ୍ତ ଉପଦେଶମାନ ଅଛି ।

**୭ । ଶୁଣିଥିବା ସଙ୍ଗୀତ ତୁମର ସ୍ମୃତିରେ ରଖ ।**

**ଜୀବନଯାପନ କଲାବେଳେ ସେ ସଙ୍ଗୀତର ଅଳ୍ପ କିଛି ତୁମେ ଶୁଣିପାର । ଯଦି କିଛି ଶୁଣି ପାରିଛ ତାହାକୁ ନିଷ୍ଠାର ସହିତ ମନେରଖ ଏବଂ ସେଥିରୁ ତୁମ ଚାରିପଟେ ଘେରି ରହିଥିବା ଗୂଢ଼ ତତ୍ତ୍ୱର ଅର୍ଥ ବୁଝିବାକୁ ଚେଷ୍ଟାକର । ସମୟରେ ତୁମର ଗୁରୁଙ୍କର ଆବଶ୍ୟକତା ରହିବ ନାହିଁ । ମନୁଷ୍ୟର ଯେପରି ବାଣୀ ଅଛି, ଯେଉଁଥିରେ ମନୁଷ୍ୟର ସ୍ଥିତି ତାହାର ମଧ୍ୟ ବାଣୀ ଅଛି ।**

ଯେଉଁ ମନୁଷ୍ୟ ଜୀବନ ସଙ୍ଗୀତର ଅଳ୍ପ କିଛି ଶୁଣିପାରୁଛି, ସେ ତାହାକୁ ନିଷ୍ଠାର ସହିତ ମନେ ରଖିବା ଆବଶ୍ୟକ । କାରଣ ଏହିପରି ଅଳ୍ପ ଅଳ୍ପ କରି ଯାହା ସେ ଶୁଣିବ ତାହାକୁ ଏକତ୍ର କରି କ୍ରମଶଃ ସେ

ତାହାକୁ ଘେରି ରହିଥିବା ଗୂଢ଼ ତତ୍ତ୍ୱର ଅର୍ଥ ବୁଝିପାରିବ । ଯେ ଏପରି କରିପାରିବ ତାହାର ଗୁରୁଙ୍କର ଆବଶ୍ୟକତା ରହିବ ନାହିଁ । କାରଣ ଯେଉଁଥିରେ ମନୁଷ୍ୟର ସ୍ଥିତି ପର୍ଯ୍ୟବସିତ ସେ ତାହାର ବାଣୀ ଶୁଣିପାରିବ ।

ସୃଷ୍ଟିର ସମ୍ପୂର୍ଣ୍ଣ ଗୂଢ଼ତତ୍ତ୍ୱ ସୌର ମଣ୍ଡଳର କର୍ତ୍ତା ଆଧ୍ୟାତ୍ମିକ ସୂର୍ଯ୍ୟ ନାରାୟଣଙ୍କୁ ଜଣା । ମନୁଷ୍ୟର ଚେତନା ତାହାଙ୍କ ଚେତନାର ଏକ କଣିକା ମାତ୍ର । ମନୁଷ୍ୟର ଜୀବନ ତାହାଙ୍କ ଜୀବନର ଏକ ବିନ୍ଦୁ ମାତ୍ର । ମନୁଷ୍ୟ ଚେତନାର ବିକାଶ ଅର୍ଥ ତାହାଙ୍କ ଚେତନାରୁ କିଛି ଅଧିକ ପାଇବା । ସମଗ୍ର ସୃଷ୍ଟି ଏକ ସମନ୍ୱିତ ସୁସଙ୍ଗତ ଯୋଜନା । ଏହା ହିଁ ଜୀବନର ସଙ୍ଗୀତ ।

**୬ । ସେଥିରୁ ତୁମେ ସୁସଙ୍ଗତି ଶିକ୍ଷା କର ।**

**ଯେ ସଂଗ୍ରାମ କରୁଛନ୍ତି ସେ ତୁମେ ଓ ତୁମର ରାଜା । ସେହି ରାଜାଙ୍କ ନିର୍ଦ୍ଦେଶ ପାଳନ କରି ତୁମେ ବର୍ତ୍ତମାନ ସଂଗ୍ରାମର ବିପର୍ଯ୍ୟୟ ମଧ୍ୟରେ ପ୍ରସ୍ତର ଖଣ୍ଡ ପରି ଦୃଢ଼ ଭାବରେ ଦଣ୍ଡାୟମାନ ହୋଇପାରିବ । ରାଜାଙ୍କ ଆଦେଶ ପାଳନ କରିବା ବ୍ୟତୀତ ତୁମର ସଂଗ୍ରାମ ସହିତ ଅନ୍ୟ ସମ୍ପର୍କ ନାହିଁ । ସଂଗ୍ରାମର ପରିଣତି ପ୍ରତି ତୁମର ଭ୍ରୂକ୍ଷେପ ନାହିଁ । କାରଣ ରାଜା ଜୟଲାଭ କରିବା ନିଶ୍ଚିତ, ପରାଜୟ ଅସମ୍ଭବ । ଶାନ୍ତ ଭାବରେ ଉନ୍ମୁକ୍ତ ଚେତନାରେ ଅବସ୍ଥାନ କର, କଷ୍ଟ ସହ୍ୟ କର ଓ କଷ୍ଟ ନିବାରଣ କର ଯେଉଁ ଶ୍ରବଣ ଶକ୍ତି ପାଇଛ, ତାହାର ଉପଯୋଗ କର ।**

ପୂର୍ବରୁ କୁହାଯାଇଛି ଯେ monad ଉଚ୍ଚ ଅହଂ ଜରିଆରେ ଓ ଉଚ୍ଚ ଅହଂ ନିମ୍ନ ଅହଂ ଜରିଆରେ ଜୀବନ ସଂଗ୍ରାମ କରୁଛନ୍ତି । Monadଙ୍କୁ ରାଜା କହିଲେ ଉଚ୍ଚ ଅହଂକୁ ରାଜାଙ୍କ ପ୍ରତିନିଧି କୁହାଯିବ ଓ ନିମ୍ନ ଅହଂକୁ ସୈନିକ କୁହାଯିବ । ନିମ୍ନ ଅହଂ ଯେତେବେଳେ ଉଚ୍ଚ ଅହଂକୁ ଜାଣିବ ଓ ତାହାର ନିର୍ଦ୍ଦେଶ ଶୁଣିପାରିବ, ସେ ଜାଣିବ ଯେ ସେ ଏକ ସୈନିକ ମାତ୍ର । ଏହି ଜ୍ଞାନ ଲାଭ କଲେ କେବଳ ଉଚ୍ଚ ଅହଂର ନିର୍ଦ୍ଦେଶ ପାଳନ କରିବା ତାହାର କର୍ତ୍ତବ୍ୟ ବୋଲି ଜାଣିବ । ସଂଗ୍ରାମର ପରିଣତି ପାଇଁ ସେ

ଚିନ୍ତିତ ହେବ ନାହିଁ, କାରଣ ଉଚ୍ଚ ଅହଂର ବିଜୟ ନିଶ୍ଚିତ ବୋଲି ସେ ଜାଣେ ।

ଜୀବନ ସଂଗ୍ରାମରେ ନିମ୍ନ ଅହଂ ବହୁତ ଦୁଃଖ କଷ୍ଟ ସହିଛି; କାରଣ ତାହାର ଭ୍ରମାତ୍ମକ ଧାରଣା ଥିଲି ଯେ ସଂଗ୍ରାମ ତାହାର ଓ ସେଥିରେ ତାହାକୁ ଜୟଲାଭ କରିବାକୁ ହେବ । ଉଚ୍ଚ ଅହଂକୁ ଜାଣିଲେ ଓ ତାହାର ନିର୍ଦ୍ଦେଶ ଶୁଣିପାରିଲେ ଏହି ଭ୍ରମ ଦୂର ହୁଏ ଓ ତାହାର ସମସ୍ତ ଦୁଃଖ କଷ୍ଟର ଅବସାନ ଘଟେ ।

## ଚତୁର୍ଥ ଅଧ୍ୟାୟ—୯ମ ରୁ ୧୨ଶ ଉକ୍ତି

ଏହି ଅଧ୍ୟାୟର ୯ମ ରୁ ୧୧ଶ ଉକ୍ତି ମୂଳ ଗ୍ରନ୍ଥରୁ ସଂଗୃହୀତ । ୧୨ଶ ଉକ୍ତି ମହାଚୌହାନଙ୍କର । ଏହି ୧୨ଶ ଉକ୍ତିକୁ ତିନି ଭାଗ କରି ୯ମ ରୁ ୧୧ଶ ପ୍ରତ୍ୟେକ ଉକ୍ତି ପରେ ସଂପୃକ୍ତ ଭାଗ ରୂପେ ଦିଆଯାଇଛି ।

**୯ । ସମସ୍ତ ଜୀବନ ଯାହା ତୁମକୁ ଘେରି ରହିଛି ତାହାକୁ ସମ୍ମାନପୂର୍ବକ ଲକ୍ଷ୍ୟ କର ।**

**ତୁମକୁ ଘେରି ରହିଥିବା ଅହରହ ପରିବର୍ତ୍ତନଶୀଳ ଓ ଗତି-ଶୀଳ ଜୀବନକୁ ସର୍ବଦା ଲକ୍ଷ୍ୟ କର । କାରଣ, ତାହା ମାନବ ହୃଦୟରେ ଗଠିତ । ତୁମେ ଯେତେ ତାହାକୁ ବୁଝିବ ଓ ସେଥିରୁ ଶିକ୍ଷା ଲାଭ କରିବ ସେତେ ବୃହତ୍ତର ଜୀବନକୁ ଜାଣିବ ।**

ମନୁଷ୍ୟ ଜାତି ଆଧ୍ୟାତ୍ମିକ ବିକାଶ ନିଶୁଣିର ବିଭିନ୍ନ ପାବଚ୍ଛରେ ଅଛନ୍ତି । ପଶୁ ରୁ ମନୁଷ୍ୟ ହେବା ସମୟ, ପ୍ରାରବ୍ଧ କର୍ମ ଓ ଏ ଜୀବନର ପ୍ରୟାସ ଅନୁଯାୟୀ ଲୋକ ଉଚ୍ଚ ବା ନିମ୍ନ ପାବଚ୍ଛରେ ଥାଏ । ଆଜି ଯେ ଉଚ୍ଚ ପାବଚ୍ଛରେ ଅଛି ପୂର୍ବେ ସେ ନିମ୍ନ ପାବଚ୍ଛରେ ଥିଲା ଓ ଆଜି ଯେ ନିମ୍ନ ପାବଚ୍ଛରେ ଅଛି ଭବିଷ୍ୟତରେ ସେ ଉଚ୍ଚ ପାବଚ୍ଛକୁ ଆସିବ । ନିମ୍ନ ପାବଚ୍ଛରେ ଥିବା ଲୋକଙ୍କୁ ଏହି ଦୃଷ୍ଟିରେ ଦେଖିବା ଉଚିତ । ବୁଦ୍ଧି ସ୍ତରରେ ସମସ୍ତ ଆତ୍ମା ଏକ । ଜୀବନ ସବୁଠାରେ ଏକ । ସବୁ ଓ ସମସ୍ତେ ପରମେଶ୍ୱରଙ୍କ ପରିପ୍ରକାଶ । ପରମେଶ୍ୱରଙ୍କ ବିକାଶ ଯୋଜନା ଊର୍ଦ୍ଧ୍ୱଗାମୀ ଓ କ୍ରମ ଗତିଶୀଳ ହୋଇଥିବାରୁ ତାଙ୍କର ପରିପ୍ରକାଶ ସବୁ ସ୍ତରରେ ବିବିଧ । ତେଣୁ ଅତ୍ୟନ୍ତ ଉଚ୍ଚକୋଟୀର ଲୋକ ଓ ଅତ୍ୟନ୍ତ ନୀଚ ପ୍ରବୃତ୍ତିର ଲୋକ ପୃଥିବୀପୃଷ୍ଠେ ଥିବାର ଆମେ ଦେଖୁ ।

ନୀଚ ପ୍ରକୃତିର ଲୋକକୁ ଘୃଣା କରିବା ଅନୁଚିତ । ତାହା ଅନ୍ତରରେ ସକଳ ଆଧ୍ୟାତ୍ମିକ ଗୁଣ ସୁପ୍ତ ଅବସ୍ଥାରେ ଅଛି । ସମୟକ୍ରମେ ତାହା ମୁକୁଳିତ ହେବ । ତେଣୁ ଯଦି ସେ ସାହାଯ୍ୟ ଗ୍ରହଣ କରିବାକୁ ପ୍ରସ୍ତୁତ

ଥାଏ, ତାହାକୁ ସାହାଯ୍ୟ କରିବା ଉଚିତ୍ । ଅଳ୍ପ ଲୋକ ଅଛନ୍ତି ଯେଉଁମାନେ କି ତାଙ୍କର ଆତ୍ମାରୁ ବିଚ୍ୟୁତ ହୋଇଯାଇଛନ୍ତି । ଜନ୍ମ ଜନ୍ମ କାଳ ସେମାନେ ନିଷ୍ଠୁର, କ୍ରୁର ଓ ଅସଦ୍ କାର୍ଯ୍ୟ କରି ଆତ୍ମାବିହୀନ ମାନବରୂପୀ ପିଶାଚ ହୋଇଯାଇଛନ୍ତି । ସେମାନଙ୍କୁ Lost Soul କୁହାଯାଏ । ସେହି ଅଳ୍ପ କେତେକ ଲୋକଙ୍କୁ ଛାଡ଼ିଦେଲେ ଅନ୍ୟ ସମସ୍ତେ ତାଙ୍କର ବର୍ତ୍ତମାନର ପାବଚ୍ଛ ଅତିକ୍ରମ କରି ଉଚ୍ଚତର ପାବଚ୍ଛକୁ ଯିବେ ।

ପୃଥିବୀ ଗୋଲକମାଳାର ପଞ୍ଚମ ଚକ୍ରକାଳ ମଧ୍ୟ ଭାଗରେ ମାନବ ଜାତିର ଦୁଇ ତୃତୀୟାଂଶ ମାନବ ଆଧ୍ୟାତ୍ମିକ ପ୍ରଗତିରୁ ବଞ୍ଚିତ ହେବେ ଓ ପରବର୍ତ୍ତୀ ଗୋଲକମାଳାରେ ଉପଯୁକ୍ତ ସମୟରେ ତାଙ୍କର ଆଧ୍ୟାତ୍ମିକ ବିକାଶ ଯେଉଁଠାରେ ବନ୍ଦ ହୋଇଥିଲା ସେହିଠାରୁ ଆରମ୍ଭ କରିବେ । କାରଣ, ବିକାଶ ଯୋଜନାରେ ଗୋଟିଏ ଲକ୍ଷ୍ୟ ହାସଲ କରିବାକୁ ଗୋଟିଏ ନିର୍ଦ୍ଦିଷ୍ଟ ସମୟ ଅଛି । ଯେଉଁମାନେ ସେହି ନିର୍ଦ୍ଦିଷ୍ଟ ସମୟରେ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ହାସଲ କରିପାରିବେ ନାହିଁ, ସେମାନେ ପର ଗୋଲକମାଳାକୁ ଅପେକ୍ଷା କରି ରହିବେ । ପୃଥିବୀ ଗୋଲକମାଳାରେ ପ୍ରତ୍ୟେକ ଚକ୍ରର ଲକ୍ଷ୍ୟ ନିର୍ଦ୍ଦିଷ୍ଟ ଅଛି । ଅନୁମାନ କରାଯାଇଛି ଯେ ମାନବ ଜାତିର ଦୁଇ-ତୃତୀୟାଂଶ ସପ୍ତମ ଚକ୍ରର ଲକ୍ଷ୍ୟ ହାସଲ କରିପାରିବେ ନାହିଁ ଓ ସେମାନେ ଅନ୍ୟମାନଙ୍କ ପ୍ରଗତିର ପ୍ରତିବନ୍ଧକ ହେବେ । ତେଣୁ ପଞ୍ଚମ ଚକ୍ର କାଳ ମଧ୍ୟ-ଭାଗରେ ତାଙ୍କର ପ୍ରଗତି ରୁଦ୍ଧ ହୋଇଯିବ । ତଥାପି ସେମାନେ ମାନବ ଜାତିର ଅନ୍ତର୍ଭୁକ୍ତ । ସେମାନଙ୍କ ଅବସ୍ଥା ବୁଝି ସାହାଯ୍ୟ କରିପାରିଲେ ସେମାନଙ୍କ ପ୍ରଗତି ଉପରୋକ୍ତ ପ୍ରକାରେ ବାଧାପ୍ରାପ୍ତ ହୋଇ ନ ପାରେ ।

କାମ, କ୍ରୋଧ, ଲୋଭ, ଇତ୍ୟାଦିରେ ଅଭିଭୂତ ହୋଇଥିବା ଲୋକଙ୍କୁ ଘୃଣା ନ କରି ବୁଝିବା ଉଚିତ୍ । ପ୍ରତ୍ୟେକର ବାହ୍ୟ କାରଣ ଥାଏ ଓ ଲୋକର ସ୍ୱଭାବ ଥାଏ । ଉଭୟ କାରଣକୁ ବୁଝିବା ଉଚିତ । ସେହିପରି ଅପରାଧୀ ଓ ଘୃଣ୍ୟ କାର୍ଯ୍ୟରତ ଲୋକଙ୍କୁ ମଧ୍ୟ ବୁଝିବା ଉଚିତ ।

ବନ୍ୟା, ବାତ୍ୟା, ଭୂମିକମ୍ପ, ଅଗ୍ନିକାଣ୍ଡ, ମହାମାରୀ ଇତ୍ୟାଦି ପ୍ରାକୃତିକ ବିପର୍ଯ୍ୟୟରେ ଅନେକ ଲୋକଙ୍କ ମୃତ୍ୟୁ ହୁଏ । ଯୁଦ୍ଧ, ଧର୍ମଗତ କଳହ, ଜାତିଆଣ କଳହ ଇତ୍ୟାଦି ମନୁଷ୍ୟକୃତ ବିପର୍ଯ୍ୟୟରେ ମଧ୍ୟ ଅନେକ ଲୋକଙ୍କ ମୃତ୍ୟୁ ହୁଏ । ଏସବୁ ବିପର୍ଯ୍ୟୟରେ ହତାହତ ଲୋକ ଓ

ସେମାନଙ୍କ ଆତ୍ମୀୟ ସ୍ୱଜନମାନଙ୍କ ପାଇଁ ଦୁଃଖ ହେଲେ ମଧ୍ୟ ଏହାର ମଙ୍ଗଳପ୍ରଦ ଶିକ୍ଷାଦାୟକ ଦିଗ ଅଛି । ଏହା ବୁଝିବା ଉଚିତ୍ ଓ ସେଥିରୁ ଶିକ୍ଷାଲାଭ କରିବା ଉଚିତ୍ ।

ମାନବ ଜାତିର ଆଧ୍ୟାତ୍ମିକ ସୁସଙ୍ଗତ ବିକାଶ ପାଇଁ କେତେକ ଘଟଣା ଘଟିବା ଆବଶ୍ୟକ, ଯାହାକୁ ଆମେ ପ୍ରାକୃତିକ କିମ୍ବା ମାନବକୃତ ବିପର୍ଯ୍ୟୟ ବୋଲି କହୁ । ଶୁଦ୍ଧତା ଓ ପୂର୍ଣ୍ଣତା ବିକାଶର ଲକ୍ଷ୍ୟ । ଏହି ଲକ୍ଷ୍ୟ ହାସଲ ପାଇଁ ଯାହା ଅନାବଶ୍ୟକ ଓ ଅଶୁଦ୍ଧ ତାହା ବିକାଶ ଯୋଜନା ଅନୁଯାୟୀ ନିଷ୍କାସନ କରାଯାଏ । ଏହା ବୁଝିବା ଉଚିତ୍ ଓ ସେଥିରୁ ଶିକ୍ଷା ଲାଭ କରିବା ଉଚିତ ।

ମାନବ ଜାତି ପାଇଁ ଯେଉଁ ବିଧିର ପ୍ରଯୁଜ୍ୟ ପ୍ରତ୍ୟେକ ମନୁଷ୍ୟ ପାଇଁ ମଧ୍ୟ ସେଇ ବିଧିର ପ୍ରଯୁଜ୍ୟ । ପ୍ରତ୍ୟେକ ମନୁଷ୍ୟର ଦୁଃଖ କଷ୍ଟର କାରଣ ଅଛି ଓ ସେଥିରୁ ସେ ଶିକ୍ଷା ପାଇବାକୁ ଅଛି । ଏକଥା ମନେ ରଖିବା ଆବଶ୍ୟକ ଯେ, ଯାହା ଘଟେ ତାହା ମଙ୍ଗଳପ୍ରଦ ଓ ଶିକ୍ଷାଦାୟକ ଏବଂ ସମସ୍ତ ଦୁଃଖ କଷ୍ଟ ତାହାର ବାହକ ।

**୧୦ । ବୁଦ୍ଧି ପ୍ରୟୋଗ କରି ମନୁଷ୍ୟମାନଙ୍କ ହୃଦୟକୁ ନିରୀକ୍ଷଣ କର ।**

**ମନୁଷ୍ୟମାନଙ୍କ ହୃଦୟକୁ ଅନୁଶୀଳନ କର, ଯାହାଦ୍ୱାରା ତୁମେ ସଂସାରକୁ ଚିହ୍ନିବ । ଏହି ସଂସାରର ତୁମେ ଏକ ଅଂଶ ।**

ମନୁଷ୍ୟର ହୃଦୟକୁ ନିରୀକ୍ଷଣ କରିବା ଓ ଅନୁଶୀଳନ କରିବା ଅର୍ଥ ମନୁଷ୍ୟକୁ ସମ୍ପୂର୍ଣ୍ଣରୂପେ ବୁଝିବା । ମନୁଷ୍ୟର ପ୍ରତ୍ୟେକ କାର୍ଯ୍ୟ ପଛରେ ତାହାର ଚିନ୍ତା, କାମନା, ପ୍ରବୃତ୍ତି ଓ ଅନୁଭୂତି ଥାଏ । ଏସବୁ ଗଭୀର-ଭାବେ ଅନୁଶୀଳନ କଲେ ମନୁଷ୍ୟର ଆଧ୍ୟାତ୍ମିକ ସ୍ତର ଜଣାପଡ଼େ । ଯେଉଁ ମନୁଷ୍ୟ ସମାଜରେ ଆମେ ଅଛୁ ତାହାକୁ ସାହାଯ୍ୟ କରିବାକୁ ହେଲେ ଏପରି ଅନୁଶୀଳନ ଆବଶ୍ୟକ ।

ଯାହାକୁ ମନ୍ଦ ବୋଲି ଆମେ ବିବେଚନା କରୁଛୁ, ତାହାକୁ ଅନୁଶୀଳନ କଲେ ଦେଖାଯିବ ଯେ, ମନ୍ଦ କାର୍ଯ୍ୟ କରିବା ଲୋକ ନିମ୍ନ ଆଧ୍ୟାତ୍ମିକ ସ୍ତରରେ ଅଛି, କିନ୍ତୁ ସେହି ମନ୍ଦ କାର୍ଯ୍ୟ କରିବାଦ୍ୱାରା ସେ

କେତେକ ସଦ୍‌ଗୁଣର ବିକାଶ କରୁଛି । ମୁଷ୍ଟିଯୁଦ୍ଧ (boxing) ଗୋଟିଏ ଖେଳ ଭାବେ ଗଣାଯାଏ । କାମ ଜଗତର କ୍ରୋଧ ଓ ନିଷ୍ଠୁରତା ଏହି ଖେଳରେ ମନୁଷ୍ୟଠାରେ ସ୍ଥୂଳ ଜଗତରେ ପ୍ରକାଶ ପାଏ । କ୍ରୋଧ ଓ ନିଷ୍ଠୁରତା ଯେଉଁମାନଙ୍କୁ ଆନନ୍ଦ ଦିଏ ସେମାନେ ଏହା ଦେଖିବାକୁ ଯାଆନ୍ତି । କିନ୍ତୁ ଏହି ଖେଳ ଖେଳୁଥିବା ଲୋକ ସାହସ, କର୍ମକୁଶଳତା ଓ କଷ୍ଟ ସହନଶୀଳତାର ବିକାଶ କରୁଛି । ଦର୍ଶକମାନଙ୍କ ମଧ୍ୟରେ ଉପରୋକ୍ତ ଅସତ୍ ଆନନ୍ଦ ସହିତ କିଛିଟା ସତ୍ ପ୍ରଭାବ ମଧ୍ୟ ପଡ଼ୁଛି ।

ସେହିପରି ପରଚର୍ଚ୍ଚା (gossip), ଈର୍ଷା, ଲୋଭ ଇତ୍ୟାଦି କରୁଥିବା ଲୋକମାନେ ଓ ହତ୍ୟା, ଧର୍ଷଣ, ଲୁଣ୍ଠନ ଆଦି କରୁଥିବା ଅପରାଧୀମାନେ ନିମ୍ନ କିମ୍ବା ବହୁ ନିମ୍ନ ଆଧ୍ୟାତ୍ମିକ ସ୍ତରରେ ଅଛନ୍ତି । ତଥାପି ସେମାନଙ୍କର ଆତ୍ମା ଅଛି ଓ ଆତ୍ମାର ତାଡ଼ନାରେ ଏସବୁ ଅସତ୍ କାର୍ଯ୍ୟରେ ମଧ୍ୟ ତାଙ୍କର ଶିକ୍ଷା ହେଉଛି ।

ମନୁଷ୍ୟ ଯେତେ ଆଧ୍ୟାତ୍ମିକ ବିକାଶ ଲାଭ କରେ, ସେ ସେତେ ପ୍ରଜ୍ଞାବାନ୍ ହୋଇଯାଏ । ଉଚ୍ଚ ଆଧ୍ୟାତ୍ମିକ ସ୍ତରକୁ ଆସିବା ପୂର୍ବରୁ ବହୁତ କଷ୍ଟ ସହି ନିମ୍ନ ସ୍ତରଗୁଡ଼ିକୁ ପାର ହେବାକୁ ହୁଏ । ଏହା ସର୍ବଦା ମନେ ରଖିବା ଉଚିତ ।

ଏ ସମ୍ବନ୍ଧରେ ମହାତ୍ମା ହିଲାରିଅନ୍ କହିଛନ୍ତି—

**ଏକ ଅବ୍ୟକ୍ତିକ (impersonal) ଦୃଷ୍ଟିକୋଣ ରଖ, ନଚେତ ତୁମର ଦୃଷ୍ଟି ରଞ୍ଜିତ (coloured) ହୋଇଯିବ । ତେଣୁ ଅବ୍ୟକ୍ତିତ୍ୱ (impersonality) ପ୍ରଥମେ ବୁଝିବାକୁ ହେବ ।**

ସାଧାରଣତଃ ନିଜକୁ ଭଲ ଲାଗିବା ବା ଭଲ ନ ଲାଗିବା ବିଚାରକୁ ନ ନେଇ ସମତୁଲ ଦୃଷ୍ଟିରେ ଦେଖିବାକୁ ଅବ୍ୟକ୍ତିକ ଦୃଷ୍ଟିକୋଣ କୁହାଯାଏ । ଏଥିରେ ନିରପେକ୍ଷତା ଓ ସମଦର୍ଶିତା ଥାଏ । କିନ୍ତୁ ଏହି ଉକ୍ତିରେ ଆହୁରି ଉଚ୍ଚକୋଟୀର ଅବ୍ୟକ୍ତିତ୍ୱର କଥା କୁହାଯାଉଛି । ଏଥିରେ କୁହାଯାଉଛି ଯେ ନିମ୍ନ ଅହଂକୁ ସମ୍ପୂର୍ଣ୍ଣ ଅତିକ୍ରମ ନ କଲେ ଦୃଷ୍ଟି ନିମ୍ନ ଅହଂର ଗୁଣରେ ରଞ୍ଜିତ ହୋଇଯିବ ଓ ସେଥିରୁ ଆହୃତ ତଥ୍ୟ ଭ୍ରାନ୍ତିକର ହେବ ।

**ଶୁଦ୍ଧ ବୁଦ୍ଧି ସର୍ବଦା ନିରପେକ୍ଷ । କୌଣସି ଲୋକ ତୁମର ଶତ୍ରୁ ନୁହେଁ ଓ କୌଣସି ଲୋକ ତୁମର ମିତ୍ର ନୁହେଁ । ସମସ୍ତଙ୍କଠାରୁ ତୁମେ ଶିକ୍ଷା ଲଭ କର । ତୁମର ଶତ୍ରୁ ତୁମ ପାଇଁ ଅବୋଧ । ବହୁକାଳ ସମୟ ଲଗିଲେ ମଧ୍ୟ ତାହାଙ୍କୁ ବୁଝିବାକୁ ହେବ । କାରଣ ମାନବ ଜାତକୁ ବୁଝିବା ଆବଶ୍ୟକ ।**

ଯାହାଙ୍କୁ ଶତ୍ରୁ ବୋଲି ଆମେ ଭାବୁ ତାହାଙ୍କ ସହିତ ହୁଏତ ପୂର୍ବ ଜନ୍ମରୁ ଶତ୍ରୁତା ଥିଲା କିମ୍ବା ଏହି ଜନ୍ମରେ ଆମେ ଏପରି କିଛି କରିଛୁ ଯାହାକି ତାହାଙ୍କୁ କଷ୍ଟ ଦେଇଛି । ଯେଉଁ କାରଣରୁ ହେଲେ ମଧ୍ୟ ତାହାଙ୍କୁ ବୁଝିବା ଓ ଶତ୍ରୁତା ପ୍ରଶମିତ କରିବା ଆବଶ୍ୟକ । ଏହା କରି ପାରିଲେ ସେଥିରୁ ଅନେକ ଶିକ୍ଷା ଲଭ ହୁଏ ।

**ତୁମର ବନ୍ଧୁ ତୁମର ଏକ ବର୍ଦ୍ଧିତ ଅଂଶ ହୋଇଯାଏ, ଯାହାକି ବୁଝିବା କଷ୍ଟକର । ତାହାଠାରୁ ଅଧିକ କଷ୍ଟକର ହେଉଛି ତୁମ ନିଜ ହୃଦୟକୁ ବୁଝିବା । ନିମ୍ନ ଅହଂ କବଳରୁ ସମ୍ପୂର୍ଣ୍ଣ ମୁକ୍ତ ନ ହେଲେ ଅହଂର ରହସ୍ୟ ଜାଣି ହେବ ନାହିଁ ।**

ତୁମେ ଓ ତୁମର ବନ୍ଧୁଙ୍କର କେତେକ ଗୁଣରେ ସାମଞ୍ଜସ୍ୟ ଅଛି । ତେଣୁ ସେ ତୁମର ଏକ ବର୍ଦ୍ଧିତ ଅଂଶ । ତଥାପି ତୁମେ ତୁମ ବନ୍ଧୁଙ୍କୁ ସମ୍ପୂର୍ଣ୍ଣ ବୁଝିନାହିଁ । କୌଣସି ଲୋକକୁ ବହୁଦିନର ଆତ୍ମୀୟତା ପରେ ମଧ୍ୟ ବୁଝିବା କଷ୍ଟକର । କାରଣ ପ୍ରତ୍ୟେକ ଲୋକର କିଛି ଗୁଣ ଲୁକ୍କାୟିତ ଅବସ୍ଥାରେ ଥାଏ ଯାହାକି ଅବସ୍ଥା, ସୁଯୋଗ ଓ ପରିବେଶ ପ୍ରଭାବରେ ହଠାତ୍ ପ୍ରକାଶ ପାଏ ଓ ତାହା ଆମକୁ ଆଶ୍ଚର୍ଯ୍ୟ କରିଦିଏ । କୌଣସି ବନ୍ଧୁଙ୍କୁ ବୁଝିବାଠାରୁ ନିଜକୁ ବୁଝିବା ଆହୁରି କଷ୍ଟକର । କାରଣ କେଉଁ ଦୋଷ ଦୁର୍ବଳତା ଆମ ଭିତରେ ସୁପ୍ତ ଅବସ୍ଥାରେ ଅଛି ତାହା ଆମେ ଜାଣୁନାହିଁ । ଆମେ କେବଳ ଆମର ପ୍ରକଟିତ ଦୋଷ ଦୁର୍ବଳତାକୁ ଜାଣୁ ଓ ଦୂର କରିବାକୁ ଚେଷ୍ଟା କରୁ । ଆମର ସୁପ୍ତ ଦୋଷ ଦୁର୍ବଳତା ନିମ୍ନ ଅହଂ ସହିତ ସଂପୃକ୍ତ । ତେଣୁ ନିମ୍ନ ଅହଂ କବଳରୁ ସମ୍ପୂର୍ଣ୍ଣ ମୁକ୍ତ ନ ହେଲେ ଅହଂର ରହସ୍ୟ ଜାଣିହେବ ନାହିଁ ।

ମହାତ୍ମାମାନେ ଯେଉଁ ଲୋକକୁ ଉପଯୁକ୍ତ ବିବେଚନା କରନ୍ତି, ତାହାର ସୁପ୍ତ ଦୋଷ ଦୁର୍ବଳତାକୁ ପ୍ରକଟିତ କରାଇ ଦିଅନ୍ତି ଓ ତାହାଦ୍ୱାରା ସେ ଲୋକ ତାହାର ସମସ୍ତ ଦୋଷ ଦୁର୍ବଳତାକୁ ଜାଣିପାରେ ଓ ଦୂର କରିପାରେ ।

**ନିମ୍ନ ଅହଂ ତ୍ୟାଗ କରି ଉଚ୍ଚ ଅହଂରେ ସ୍ଥିତି ଲାଭ ନ କଲେ ନିମ୍ନ ଅହଂକୁ ବୁଝି ହେବ ନାହିଁ, କବଳିତ କରି ହେବ ନାହିଁ । ନିର୍ଦ୍ଦେଶ ଦେଇ ହେବ ନାହିଁ । ଉଚ୍ଚ ଅହଂରେ ସ୍ଥିତି ଲାଭ କରିବା ପରେ ନିମ୍ନ ଅହଂକୁ ଉପଯୁକ୍ତ ସେବା କାର୍ଯ୍ୟରେ ବ୍ୟବହାର କରିହେବ ।**

ନିମ୍ନ ଅହଂକୁ ସମ୍ପୂର୍ଣ୍ଣ ରୂପେ ଅତିକ୍ରମ କରି ଉଚ୍ଚ ଅହଂରେ ସ୍ଥିତି ଲାଭ କଲେ ନିମ୍ନ ଅହଂର ପ୍ରଭାବ ନଷ୍ଟ ହୋଇଯାଏ ଓ ତାହା କେବଳ ଉଚ୍ଚ ଅହଂର ଆଦେଶକୁ କାର୍ଯ୍ୟକାରୀ କରେ । ସେହିପରି ଉଚ୍ଚ ଅହଂ ଅତିକ୍ରମ କରି monadରେ ସ୍ଥିତି ଲାଭ କଲେ ଉଭୟ ଉଚ୍ଚ ଓ ନିମ୍ନ ଅହଂ monadର ଆଦେଶରେ ପରିଚାଳିତ ହୁଅନ୍ତି । ଏହା ମହାତ୍ମାମାନେ କରିପାରିଛନ୍ତି ।

**୧୧ । ନିଜ ହୃଦୟରେ ଶ୍ରଦ୍ଧା ଓ ମନୋନିବେଶ କର ।**

**କେବଳ ତୁମ ହୃଦୟରୁ ଯେଉଁ ରଶ୍ମି ଆସିବ ତାହା ଜୀବନକୁ ଆଲୋକିତ କରିବ ଓ ତୁମର ଦୃଷ୍ଟିକୁ ନିର୍ମଳ କରିବ ।**

Monadର ଆଲୋକ ଆତ୍ମାର ଅଂଶ ରୂପେ ତୁମ ନିଜ ଅନ୍ତରରେ ଅଛି । ତାହାକୁ ପାଇବାକୁ ଶ୍ରଦ୍ଧା ଓ ଆନ୍ତରିକତାର ସହିତ ଚେଷ୍ଟା କର । ଉପଯୁକ୍ତ ଅବସ୍ଥାକୁ ଆସିଲେ ତୁମର ନିର୍ଦ୍ଦିଷ୍ଟ ଗୁରୁ ତୁମକୁ ସାହାଯ୍ୟ କରିବେ । କିନ୍ତୁ ତୁମକୁ ଚେଷ୍ଟା କରି ସେ ଆଲୋକ ପାଇବାକୁ ହେବ । ସେ ଆଲୋକ ପ୍ରାପ୍ତ ହେଲେ ତୁମର ଦୃଷ୍ଟି ନିର୍ମଳ ହେବ । ତାହା ଈଶ୍ୱରୀୟ ଆଲୋକ । ଈଶ୍ୱର ତୁମ ନିଜ ଅନ୍ତରରେ ଅଛନ୍ତି । ତାହାଙ୍କୁ ଅନ୍ୟତ୍ର ଖୋଜିବା ନିରର୍ଥକ ।

**ପଞ୍ଚମ ଅଧ୍ୟାୟ—୧୩ଶ ଉକ୍ତି**

୧୩ଶ ଉକ୍ତି ମୂଳ ଗ୍ରନ୍ଥରୁ ସଂଗୃହୀତ ନୁହେଁ । ଏହା ମହାଗୁରୁମାନଙ୍କ ଉକ୍ତି ।

**୧୩ । କହିବାର ଶକ୍ତି କେବଳ ଜ୍ଞାନ ସହିତ ଆସେ । ସେହି ଜ୍ଞାନ ଲଭ କଲେ ତୁମେ କହିବାର ଶକ୍ତି ଲଭ କରିବ ।**

ଏ ସମ୍ପର୍କରେ ମହାତ୍ମା ହିଲାରିଅନ୍ କହିଛନ୍ତି—

**ନିଜେ ନିଶ୍ଚୟତା ପ୍ରାପ୍ତ ନ ହେଲେ ଅନ୍ୟକୁ ସାହାଯ୍ୟ କରିବା ଅସମ୍ଭବ ।**

ପୁସ୍ତକ ଅଧ୍ୟୟନ, ପ୍ରବଚନ ଶ୍ରବଣ, ଆଲୋଚନା ଓ ଗଭୀର ଚିନ୍ତା ମାଧ୍ୟମରେ ମନୁଷ୍ୟ ଅନେକ ବିଷୟରେ ଶିକ୍ଷାଲଭ କରେ । ସେଥିରେ ତାହାର କେତେକ ବିଷୟରେ ଦୃଢ଼ ବିଶ୍ୱାସ ହୋଇପାରେ । କିନ୍ତୁ ତାହା ଜ୍ଞାନ ନୁହେଁ । ପ୍ରତ୍ୟକ୍ଷ ଅନୁଭୂତି ଦ୍ୱାରା ଜ୍ଞାନ ଲଭ ହୁଏ । କୌଣସି ବିଷୟରେ ଦୃଢ଼ ବିଶ୍ୱାସ ଥିବା ଲୋକ ଅନ୍ୟମାନଙ୍କୁ ସାରଗର୍ଭକ କଥା କହିପାରେ; କିନ୍ତୁ ସେଥିରେ ଆତ୍ମଦର୍ଶନ ନ ଥିବାରୁ ତାହା ଅନ୍ୟମାନଙ୍କୁ ବିଶେଷ ସାହାଯ୍ୟ କରେ ନାହିଁ । ଆତ୍ମଦର୍ଶନ କରିଥିବା ବ୍ୟକ୍ତିର ପ୍ରତ୍ୟକ୍ଷ ଜ୍ଞାନ ଥାଏ । ତେଣୁ ତାହାର କଥାର ଗୁରୁତ୍ୱ ଥାଏ ଯାହାକି ଅନ୍ୟମାନଙ୍କୁ ବିଶେଷ ସାହାଯ୍ୟ କରେ ।

**ତୁମେ ଯେତେବେଳେ ପ୍ରଥମୋକ୍ତ ଏକବିଂଶ ଉକ୍ତିର ଶିକ୍ଷା ସମାପ୍ତ କରି ଉଚ୍ଚ ଶିକ୍ଷାର ପ୍ରକୋଷ୍ଠରେ ପ୍ରବେଶ କରିବ । ତୁମର ଶକ୍ତି ଉନ୍ନତ ହୋଇଥିବ ଓ ତୁମେ ସଂସାରର ଇନ୍ଦ୍ରିୟାସକ୍ତ ବନ୍ଧନରୁ ମୁକ୍ତ ହୋଇଥିବ । ଯେତେବେଳେ ତୁମ ଅନ୍ତରରେ ଏକ ଉତ୍ସ ପାଇବ ଯେଉଁଥିରୁ ତୁମେ କହିବାର ଶକ୍ତି ଲଭ କରିବ ।**

କାମ, ନିମ୍ନ ମାନସ, ଉଚ୍ଚ ମାନସ ଓ ବୁଦ୍ଧି ସ୍ତରମାନଙ୍କରେ ଶିକ୍ଷା ଲଭ କରାଯାଏ ଓ ଯେଉଁଠାରେ ଶିକ୍ଷା ଲଭ କରାଯାଏ ତାହାହିଁ

ଶିକ୍ଷାର ପ୍ରକୋଷ୍ଠ । ପ୍ରଥମୋକ୍ତ ଏକବିଂଶ ଉକ୍ତିର ଶିକ୍ଷା ନୂତନ ଦୀକ୍ଷିତଙ୍କୁ ନିମ୍ନ ସ୍ତରରେ ଦିଆଯାଏ ଓ ଉଚ୍ଚତର ଦୀକ୍ଷିତଙ୍କୁ ଉଚ୍ଚତର ସ୍ତରରେ ଦିଆଯାଏ । ଦୀକ୍ଷିତ କ୍ରମଶଃ ଯେତେ ଉଚ୍ଚ ସ୍ତରକୁ ଯାଏ ତାହାର ଶକ୍ତି ସେହି ଅନୁପାତରେ ବୃଦ୍ଧିଲାଭ କରେ, ସେହି ଅନୁପାତରେ ସେ ସଂସାର ବନ୍ଧନରୁ ମୁକ୍ତିଲାଭ କରେ । ଯେତେବେଳେ ଦୀକ୍ଷିତ ବୁଦ୍ଧି ସ୍ତରରେ ନିଜର ସ୍ଥିତି ଲାଭ କରେ ସେ ସଂସାର ବନ୍ଧନରୁ ସମ୍ପୂର୍ଣ୍ଣ ମୁକ୍ତ ହୋଇଥାଏ, ଉଚ୍ଚ ଶକ୍ତି ସମ୍ପନ୍ନ ହୋଇଥାଏ ଓ ସମସ୍ତ ବିଷୟରେ ପ୍ରତ୍ୟକ୍ଷ ଜ୍ଞାନଲାଭ କରିବାକୁ ସମର୍ଥ ହୁଏ । ତାହାର ଅନ୍ତରରେ ଯେଉଁ ପ୍ରତ୍ୟକ୍ଷ ଜ୍ଞାନର ଉତ୍ସ ହୁଏ ସେଥିରୁ ସେ କହିବାର ଏପରି ଶକ୍ତି ଲାଭ କରେ ଯାହାକି ଲୋକଙ୍କ ହୃଦୟରେ ଗଭୀର ରେଖାପାତ କରେ ଓ ସେମାନେ ବହୁ ପରିମାଣରେ ଉପକୃତ ହୁଅନ୍ତି ।

**ଏହି ୨୩ଶ ଉକ୍ତି ପରେ ମୁଁ ଆଉ ଅଧିକ କିଛି କହି ପାରିବି ନାହିଁ ।**

ଅର୍ଥାତ୍ ଏହାଠାରୁ ଅଧିକ କହିବା ନିରାପଦ ନୁହେଁ ।

**ମୋ'ର ଶାନ୍ତି ମୁଁ ତୁମକୁ ଦେଉଛି । △**

**ପୂର୍ବୋକ୍ତ ଉକ୍ତିଗୁଡ଼ିକ କେବଳ ସେହିମାନଙ୍କ ପାଇଁ ଉଦ୍ଦିଷ୍ଟ ଯେଉଁମାନଙ୍କୁ ମୁଁ ମୋହର ଶାନ୍ତି ଦେଉଛି, ଯେଉଁମାନେ ତାହାକୁ ଅନ୍ତର ମଧ୍ୟରେ ଓ ବାହାରେ ଉପଲବ୍ଧି କରିପାରିବେ ।**

କେବଳ ଯେଉଁ ଦୀକ୍ଷିତ ବୁଦ୍ଧି ସ୍ତରରେ ସ୍ଥିତି ଲାଭ କରି ମହାତ୍ମାଙ୍କ ସଙ୍ଗେ ଏକ ହୋଇ ଯାଆନ୍ତି ତାହାଙ୍କୁ ମହାତ୍ମା କୁହନ୍ତି, "ମୋର ଶାନ୍ତି ମୁଁ ତୁମକୁ ଦେଉଛି ।" ନିମ୍ନ ସ୍ତରର ଦୀକ୍ଷିତଙ୍କୁ ସେ କୁହନ୍ତି, "ଶାନ୍ତି ତୁମ ସହିତ ରହୁ ।" ଯେଉଁ ସ୍ତରରେ ହେଲେ ମଧ୍ୟ ମହାତ୍ମାଙ୍କର ଆଶୀର୍ବାଦ ଏକ ଶକ୍ତି ଯାହାକି ଦୀକ୍ଷିତଙ୍କୁ ପ୍ରବୁଦ୍ଧ କରେ ।

## ଷଷ୍ଠ ଅଧ୍ୟାୟ—୧୪ଶ ରୁ ୨୧ଶ ଉକ୍ତି

୧୪ଶ ଉକ୍ତି ମୂଳ ଗ୍ରନ୍ଥରୁ ସଂଗୃହୀତ ନୁହେଁ । ଏହା ମହାଗୁରୁହାନଙ୍କ ଉକ୍ତି ।

**୧୪ । ତୁମେ ତୁମର ଅନ୍ତର୍ନିହିତ ଶକ୍ତିକୁ ବ୍ୟବହାର କରିବା ଶିକ୍ଷା କରିଛ, ତୁମର ବାହ୍ୟ ଇନ୍ଦ୍ରିୟଗୁଡ଼ିକର ଆକର୍ଷଣ ଓ କାମନାକୁ ଜୟ କରିଛ, ବ୍ୟକ୍ତିଗତ ଆତ୍ମାର ଅଭିଳାଷକୁ ଜୟ କରିଛ ଓ ପ୍ରଜ୍ଞା ଲାଭ କରିଛ । ତୁମେ ଏବେ ସତ୍ୟର ପଥ ପ୍ରାପ୍ତ ହୋଇଛ । ସେହି ପଥରେ ଯିବାକୁ ପ୍ରସ୍ତୁତ ହୁଅ ।**

ଶିକ୍ଷା-ନବିସ୍ ସ୍ତର ଅତିକ୍ରମ କରିବା ପରେ ଉପଯୁକ୍ତ ବିବେଚିତ ହେଲେ ସାଧକ ପ୍ରଥମ ଦୀକ୍ଷା ଲାଭ କରେ । ଅଧିକରୁ ଅଧିକତର ସାଧନା ଓ ଶିକ୍ଷା ଲାଭ କରି ସାଧକ ୨ୟ ଓ ୩ୟ ଦୀକ୍ଷା ପରେ ୪ର୍ଥ ଦୀକ୍ଷା ଲାଭ କରି ଅରହତ୍ ହୁଏ । ୫ମ ଦୀକ୍ଷା ଲାଭ କରି ଅଶେଖ ବା ମହାତ୍ମା (Master) ହୁଏ । ୬ଷ୍ଠ ଦୀକ୍ଷା ଲାଭ କରି ଚୌହାନ ହୁଏ । ମହାଚୌହାନ ୭ମ ଦୀକ୍ଷା ପ୍ରାପ୍ତ ହୋଇଛନ୍ତି । ଏହି ଉକ୍ତି ୪ର୍ଥ ଦୀକ୍ଷା ଲାଭ କରିଥିବା ବ୍ୟକ୍ତିଙ୍କୁ ପ୍ରଯୁଜ୍ୟ । ଅରହତ୍ ବୁଦ୍ଧି ସ୍ତର ଉପରିସ୍ଥ ନିର୍ବାଣ ସ୍ତରକୁ ଯାଇଥାଏ । ଏହା ପୂର୍ବରୁ ସେ ସଂସାରର ନିମ୍ନ ଅହଂକୁ ଅତିକ୍ରମ କରିଥାଏ, ଆଧ୍ୟାତ୍ମିକ ଶକ୍ତି ଲାଭ କରିଥାଏ, ଉଚ୍ଚ ଅହଂର ମୋକ୍ଷ ଅଭିଳାଷକୁ ଜୟ କରି ନିର୍ବାଣ ସ୍ତରର ପ୍ରଜ୍ଞା ଲାଭ କରିଥାଏ । କିନ୍ତୁ ମନୁଷ୍ୟର ବିକାଶ ଏତିକରେ ସମାପ୍ତ ହୁଏ ନାହିଁ । ମନୁଷ୍ୟ ବିକାଶରେ ଅରହତ୍ ପ୍ରାପ୍ତି ଏକ ଅଧ୍ୟାୟର ଶେଷ । ଅରହତ୍‌କୁ ଆଉ ମନୁଷ୍ୟ ଜନ୍ମ ନେବାକୁ ହୁଏ ନାହିଁ । ଏହା ପରେ ଆତ୍ମାର monad ସହିତ ଏକ ହେବାର ଆରମ୍ଭ ହୁଏ ଓ ତାହା ପରେ ସୂର୍ଯ୍ୟ ନାରାୟଣଙ୍କ ସହିତ ଏକ ହେବାର ଅଧ୍ୟାୟ ଆରମ୍ଭ ହୁଏ ।

ପ୍ରତ୍ୟେକ ଦୀକ୍ଷାରେ ବିକାଶର କେତେକ ପ୍ରତିବନ୍ଧକ ଦୂର କରିବାକୁ ହୁଏ । ସର୍ବଶେଷରେ ରୂପରାଗ ଓ ଅରୂପରାଗ ପ୍ରତିବନ୍ଧକ ଦୂର କରିବାକୁ

ହୁଏ । ଶାରୀରିକ ଜୀବନର ଅଭିଳାଷ ହେଉଛି ରୂପରାଗ । ଏହା କାରଣ ଶରୀରର ସ୍ଥିତି ପର୍ଯ୍ୟନ୍ତ ରୁହେ । ତାହାଠାରୁ ଉଚ୍ଚତର ସ୍ତରର ଜୀବନର ଅଭିଳାଷ ହେଉଛି ଅରୂପରାଗ । ଏହି ଉଭୟ ଅଭିଳାଷ ପ୍ରତିବନ୍ଧକ ଓ ତାହା ତ୍ୟାଗ କଲେ ଅଶେଷ ଦୀକ୍ଷା ପ୍ରାପ୍ତ ହୁଏ । ଏହା ମହାତ୍ମାମାନଙ୍କ ଦୀକ୍ଷାର ସ୍ତର । ଏହା ପରେ ଯେଉଁ ପଥରେ ଯିବାକୁ ହୁଏ ତାହା ସତ୍ୟର ପଥ ।

**୧୫ । ପୃଥିବୀ, ବାୟୁ ଓ ଜଳ ଯେଉଁ ଗୁପ୍ତ ରହସ୍ୟ ରଖିଛନ୍ତି ତାହାଙ୍କ ଠାରୁ ତାହା ଜାଣ । ତୁମର ଅନ୍ତର୍ନିହିତ ଶକ୍ତିର ବିକାଶଦ୍ୱାରା ତୁମେ ଏହା କରିପାରିବ ।**

ଏହି ଉକ୍ତିର ପ୍ରଥମ ବାକ୍ୟଟି ମୂଳ ଗ୍ରନ୍ଥରୁ ସଂଗୃହୀତ । ଦ୍ୱିତୀୟ ବାକ୍ୟଟି ମହାଗୁରୁଦେବଙ୍କର ।

ମନୁଷ୍ୟ ଆତ୍ମକେନ୍ଦ୍ରିକ ହୋଇଥିବାରୁ ଭାବେ ଯେ ପୃଥିବୀ, ବାୟୁ ଓ ଜଳ କେବଳ ତାହାର ବ୍ୟବହାର ପାଇଁ ଅଛି । ତେଣୁ ସେ ଅନ୍ୟ-ମାନଙ୍କ ପ୍ରତି ଦୃଷ୍ଟି ନ ଦେଇ କେବଳ ନିଜର ସ୍ୱାର୍ଥ ଦୃଷ୍ଟିରୁ ଏସବୁ ଉପଯୋଗ କରେ । ପୃଥିବୀ ସମସ୍ତଙ୍କର ଜନ୍ମଦାତା । ବାୟୁ, ଜଳ ଓ ସୂର୍ଯ୍ୟ କିରଣ ସମସ୍ତଙ୍କ ଜୀବନ ଧାରଣ କରିବାର ଆଧାର । ଜଳ, ସ୍ଥଳ ଓ ବାୟୁରେ ଅସଂଖ୍ୟ ଜୀବ ଅଛନ୍ତି । ସମସ୍ତେ ପରମେଶ୍ୱରଙ୍କ ବିକାଶ ଯୋଜନାର ଅନ୍ତର୍ଭୁକ୍ତ । ପୃଥିବୀ ବାହାରେ ଯାହା କିଛି ଅଛି ସେସବୁ ମଧ୍ୟ ସେହି ବିକାଶ ଯୋଜନାର ଅନ୍ତର୍ଭୁକ୍ତ । ବିଶ୍ୱ ଏକ ସୁସଙ୍ଗତ ଯୋଜନା । କିନ୍ତୁ ପୃଥିବୀର ମନୁଷ୍ୟ ପ୍ରଥମେ ପୃଥିବୀ, ବାୟୁ ଓ ଜଳର ରହସ୍ୟ ତାହାର ଅନ୍ତର୍ନିହିତ ଶକ୍ତିଦ୍ୱାରା ଜାଣୁ ।

**୧୬ । ପୃଥିବୀର ମହତ୍ ବ୍ୟକ୍ତିଙ୍କ ଠାରୁ ଗୁପ୍ତ ବିଦ୍ୟା ଶିକ୍ଷା କର । ଇନ୍ଦ୍ରିୟଗୁଡ଼ିକର ଆକର୍ଷଣ ଓ କାମନା ଜୟ କଲେ ତୁମେ ଉକ୍ତ ମହତ୍ ବ୍ୟକ୍ତିଙ୍କଠାରୁ ଗୁପ୍ତ ବିଦ୍ୟା ଶିକ୍ଷା କରିପାରିବ ।**

ଏହି ଉକ୍ତିର ପ୍ରଥମ ବାକ୍ୟଟି ମୂଳ ଗ୍ରନ୍ଥରୁ ସଂଗୃହୀତ । ଦ୍ୱିତୀୟ ବାକ୍ୟଟି ମହାଗୁରୁଦେବଙ୍କର ।

ମହାତ୍ମାମାନେ ଓ ସେମାନଙ୍କ ସ୍ତରରେ ଥିବା ଅନ୍ୟମାନେ ପୃଥିବୀର ମହତ୍ ବ୍ୟକ୍ତି । ସେମାନେ ପ୍ରକୃତ ଗୁପ୍ତ ବିଦ୍ୟା ଜାଣନ୍ତି ଓ ଉପଯୁକ୍ତ ଲୋକଙ୍କୁ ଶିକ୍ଷା ଦିଅନ୍ତି । ଉପଯୁକ୍ତ ଲୋକ ହେବାକୁ ଇନ୍ଦ୍ରିୟ-ଗୁଡ଼ିକର ସମସ୍ତ ଆକର୍ଷଣ ଓ ସମସ୍ତ କାମନାରୁ ମୁକ୍ତ ହେବା ଆବଶ୍ୟକ । ଏହା ଯେ କରିପାରିଛି ତାହାର ନିର୍ଦ୍ଦିଷ୍ଟ ଗୁରୁ ତାହାକୁ ଚେଲା ରୂପେ ଗ୍ରହଣ କରି ଗୁପ୍ତ ବିଦ୍ୟା ଶିକ୍ଷା ଦିଅନ୍ତି ।

**୧୭ । ତୁମର ଅନ୍ତର୍ନିହିତ ଶକ୍ତିରେ ଅନ୍ତିମ ଗୁପ୍ତ ବିଦ୍ୟା ଯୁଗ ଯୁଗ ଧରି ରହିଛି । ସେଠାରେ ତାହାର ସନ୍ଧାନ କର ।**

ସାଧାରଣ ମନୁଷ୍ୟ କ୍ଷେତ୍ରରେ ତାହାର ଆତ୍ମା-ବୁଦ୍ଧି-ଉଚ୍ଚ ମାନସ ହେଉଛି ଅନ୍ତର୍ନିହିତ ଶକ୍ତି । ତେଣୁ ସାଧକ କ୍ରମଶଃ ଆତ୍ମା ସ୍ତରକୁ ଗଲେ ଅନେକ ଗୁପ୍ତ ବିଦ୍ୟା ଲାଭ କରେ । କିନ୍ତୁ ତାହା ଗୁପ୍ତ ବିଦ୍ୟାର ସମାପ୍ତି ନୁହେଁ । ଆତ୍ମା ସ୍ତରରେ ଯେ ସ୍ଥିତି ଲାଭ କରିଛି ତାହାପାଇଁ monad ହେଉଛି ଅନ୍ତର୍ନିହିତ ଶକ୍ତି । Monad ସ୍ତରରେ ସ୍ଥିତି ଲାଭ କଲେ ମଧ୍ୟ ଗୁପ୍ତ ବିଦ୍ୟାର ସମାପ୍ତି ହୁଏ ନାହିଁ । ଆହୁରି ଅଗ୍ରସର ହେବାକୁ ଥାଏ । ପରମେଶ୍ୱର ହିଁ ଆଦି ଓ ଅନ୍ତିମ ଶକ୍ତି । Monad ତାହାଙ୍କ ଶକ୍ତିର ଏକ କଣିକା ମାତ୍ର । ମନୁଷ୍ୟ monadର ପରିପ୍ରକାଶ ହୋଇଥିବାରୁ ସମସ୍ତ ଗୁପ୍ତ ବିଦ୍ୟା ତାହାର ଅନ୍ତର୍ନିହିତ ଶକ୍ତିର ଅନ୍ତର୍ଭୁକ୍ତ । ଏହା ଯୁଗ ଯୁଗ ଧରି ସେଠାରେ ଅଛି । ଯେ ସନ୍ଧାନ କରିବ ସେ ଜାଣିବ ।

ଏହି ଉକ୍ତି ସମ୍ପର୍କରେ ମହାଚୌହାନ କହିଛନ୍ତି—

**ଇନ୍ଦ୍ରିୟଗୁଡ଼ିକର ଆକର୍ଷଣ ଓ କାମନା ଜୟ କରିବାକୁ ଅନେକ କଷ୍ଟ ସ୍ୱୀକାର କରିବାକୁ ହୁଏ ଓ ଅନେକ କାଳ ଲାଗେ । ତେଣୁ ଅନେକ କାଳରେ ଅନେକ ଅନୁଭୂତି ଲାଭ କରିବା ପୂର୍ବରୁ ଫଳ ପ୍ରାପ୍ତିର ଆଶା ରଖ ନାହିଁ । ଯେତେବେଳେ ତୁମେ ୧୭ଶ ଉକ୍ତି ବର୍ଣ୍ଣିତ ସ୍ତରକୁ ଆସିବ ସେତେବେଳେ ଅତମାନବ ସ୍ତରର ଦ୍ୱାରରେ ପହଞ୍ଚିବ ।**

ଜୀବାତ୍ମା (ନିମ୍ନ ଅହଂ) ଆତ୍ମା (ଉଚ୍ଚ ଅହଂ) ସହିତ ଏକ ହୋଇ-ଯିବା ଜୀବନ ବିକାଶର ଗୋଟିଏ ସ୍ତର । ଆତ୍ମା ପରମାତ୍ମା (monad)

ସହିତ ଏକ ହୋଇଯିବା ଆଉ ଗୋଟିଏ ଉଚ୍ଚତର ସ୍ତର । ପରମାତ୍ମା ଆଧ୍ୟାତ୍ମିକ ସୂର୍ଯ୍ୟଙ୍କ ସହିତ ଏକ ହୋଇଯିବା ପୁଣି ଗୋଟିଏ ଉଚ୍ଚତର ସ୍ତର । ଏହା ପରେ ଜୀବନ ବିକାଶର ଅନ୍ୟ ଉଚ୍ଚତର ସ୍ତର ଅଛି ଯାହା ବିଷୟରେ କିଛି ଜଣା ନାହିଁ ।

ଜୀବନ ବିକାଶର ପ୍ରତ୍ୟେକ ସ୍ତରକୁ କଷ୍ଟ ସ୍ୱୀକାର କରି ବହୁକାଳର ବହୁ ଅନୁଭୂତି ଲାଭ କଲା ପରେ ପାର ହେବାକୁ ହୁଏ । ତେଣୁ ଫଳ ପ୍ରାପ୍ତି ପାଇଁ ବହୁ କାଳ ଲାଗେ । ୧୭ଶ ଉକ୍ତି ବର୍ଣ୍ଣିତ ଶିକ୍ଷା ଲାଭ କରିଥିବା ବ୍ୟକ୍ତି ମାନବ ବିକାଶ ଶେଷ କରିଛି । ସେ ଅତିମାନବ ହୋଇଯାଇଛି । ଏହା ପରେ ସେ monad ସହିତ ଏକ ହେବାର ସାଧନା କରିବ ।

ଯୁଗ ଯୁଗ ଧରି ମାନବ ଜାତିର ବିକାଶ ହେଉଛି ଏବଂ ଯୁଗ ଯୁଗ ଧରି ଏହା ହେଉଥିବ । ମନ୍ଥର ଗତିରେ ସମଗ୍ର ମାନବ ଜାତିର ବିକାଶ ଯୁଗ ଯୁଗ ଧରି ହେଉଛି । କିନ୍ତୁ ସାଧକର ଗତି ମନ୍ଥର ନୁହେଁ । ସେ ନିଜର ସାଧନାର କଷ୍ଟ ସ୍ୱୀକାର କରି ଦ୍ରୁତ ଅଗ୍ରଗତି କରୁଛି । ତଥାପି ସେ ଅଳ୍ପ ସମୟରେ ଫଳପ୍ରାପ୍ତିର ଆଶା ତ୍ୟାଗ କରିବା ଉଚିତ । ପୁନଶ୍ଚ ଫଳ ପ୍ରାପ୍ତିର ଆଶା ରଖିବା ଏକ ଆଧ୍ୟାତ୍ମିକ ଅଭିଳାଷ, ଯାହାକି ଏକ ପ୍ରତିବନ୍ଧକ ।

**୧୮ । ତୁମର ଆତ୍ମା ବର୍ତ୍ତମାନ ଅନ୍ୟ ସମସ୍ତ ଶୁଦ୍ଧ ଆତ୍ମା ସହିତ ଏକ ହୋଇଯାଇଥିବାରୁ ତୁମେ ପ୍ରଜ୍ଞା ଲାଭ କରିଛ । ଏହାଦ୍ୱାରା ସର୍ବୋଚ୍ଚ କର୍ତ୍ତା ତୁମଠାରେ ବିଶ୍ୱାସ ସ୍ଥାପନ କରିଛନ୍ତି । ଏହି ବିଶ୍ୱାସର ଅପବ୍ୟବହାର କଲେ, ତୁମର ଜ୍ଞାନର ଅପବ୍ୟବହାର କଲେ କିମ୍ବା ତାହାକୁ ଅବହେଳା କଲେ ତୁମର ଉଚ୍ଚ ସ୍ଥିତିରୁ ପତନ ଘଟିବ । ଅନେକ ତାଙ୍କର ଦାୟିତ୍ୱର ଭାର ସହି ନ ପାରି ଅତିମାନବ ଦ୍ୱାର ପାର ହୋଇପାରି ନାହାନ୍ତି । ତେଣୁ ଏହି ମୁହୂର୍ତ୍ତପାଇଁ ଶଙ୍କା ରଖି ସେଥିପାଇଁ ସଂଗ୍ରାମ କରିବାକୁ ପ୍ରସ୍ତୁତ ରୁହ ।**

ଏହି ଉକ୍ତିଟି ମୂଳ ଗ୍ରନ୍ଥରୁ ସଂଗୃହୀତ ନୁହେଁ । ଏହା ମହା-ଚୋହାନଙ୍କର ।

ଯେଉଁ ଲୋକ ଆତ୍ମା ସ୍ତରରେ ସ୍ଥିତି ଲାଭ କରିଛି ତାହାର ପତନ ଅସମ୍ଭବ ବୋଲି ମନେ ହେବ । କିନ୍ତୁ ଏପରି ପତନ ହେବା ମହାତ୍ମାମାନେ ଜାଣନ୍ତି । ତେଣୁ ସାବଧାନ କରି ଦେଇଛନ୍ତି । ନିମ୍ନ ଅହଂର ହେଉ ବା ଉଚ୍ଚ ଅହଂର ହେଉ, ସ୍ୱାର୍ଥ ସୂକ୍ଷ୍ମ ଭାବରେ ସୁପ୍ତ ଅବସ୍ଥାରେ ରହିବାର ଆଶଙ୍କା ଅଛି । ଯଦି ଏପରି ଥାଏ ତାହା ଉଚ୍ଚ ସ୍ତରରେ ହଠାତ୍ ପ୍ରକାଶ ପାଏ ଓ ପତନର କାରଣ ହୁଏ ।

**୧୯ । ଯେ ଅତିମାନବ ଦ୍ୱାରରେ ପହଞ୍ଚିଛି ତାହାପାଇଁ କୌଣସି ନିୟମ ପ୍ରଣୟନ କରି ହେବ ନାହିଁ ଓ କେହି ପଥ ପ୍ରଦର୍ଶକ ରହିବେ ନାହିଁ । ତଥାପି ଦୀକ୍ଷିତକୁ ଜଣାଇ ଦିଆଯାଉଛି ଯେ ତାହାକୁ ଅନ୍ତିମ ସଂଗ୍ରାମରେ—ଯାହାର ଆକୃତି ନାହିଁ କିମ୍ବା ସ୍ଥିତି ନାହିଁ ତାହାକୁ ଧରି ରଖ ।**

**୨୦ । କେବଳ ସେହି ବାଣୀକୁ ଶୁଣ ଯାହା ନୀରବ ।**

**୨୧ । ଯାହା ଅନ୍ତର୍ଦୃଷ୍ଟି ଓ ବାହ୍ୟ ଦୃଷ୍ଟିରେ ଦୃଶ୍ୟମାନ ନୁହେଁ କେବଳ ତାହାକୁ ଦେଖ ।**

**ତୁମ ସହିତ ଶାନ୍ତି ରହୁ ।**



୧୯ଶ ଉକ୍ତିର ପ୍ରଥମ ଭାଗରେ ଯାହା କୁହାଯାଇଛି ତାହା ମହାତ୍ମାମାନେ ଲେଖିଛନ୍ତି । ଏହି ଉକ୍ତିର ଦ୍ୱିତୀୟ ଭାଗ (— ପରେ), ୨୦ଶ ଉକ୍ତି ଓ ୨୧ଶ ଉକ୍ତି ମୂଳ ଗ୍ରନ୍ଥରୁ ସଂଗୃହୀତ ।